# ଅଜା ଆମର ମଜା କଲେ



ନାରାୟଣ ମହାପାତ୍ର

# ଅଜା ଆମର ମଜା କଲେ

ଶ୍ରୀ ନାରାୟଣ ମହାପାତ୍ର
ମୁଖ୍ୟ ସଂପାଦକ, 'ସମାଜ', କଟକ

ପ୍ରକାଶକ
କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

# ଅଜା ଆମର ମଜା କଲେ

ଲେଖକ :
**ଶ୍ରୀ ନାରାୟଣ ମହାପାତ୍ର**
ସହ ସମ୍ପାଦକ, 'ସମାଜ', କଟକ-୧

ପ୍ରକାଶକ :
**କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋର**
ବିନୋଦ୍ ବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ
୧୯୮୦ ଡିସେମ୍ବର

ମୁଦ୍ରକ :
**କଲ୍ୟାଣୀ ପ୍ରିଣ୍ଟର୍ସ**
ଦୋଳମୁଣ୍ଡାଇ, କଟକ

ପ୍ରଚ୍ଛଦପଟ୍ଟ ଶିଳ୍ପୀ
**ଶ୍ରୀ ଶିବ ପାଣିଗ୍ରାହୀ**

**ମୂଲ୍ୟ ପାଞ୍ଚଟଙ୍କା**

# AZA AMAR MAZA KALE

*Written by* :
**Sri Narayana Mahapatra**
Sub-Editor, The 'Samaj'
Cuttack-1

*Published by* :
**Kalinga Students Store**
Binod Behari, Cuttack-753002

First Editon
December, 1980

*Printed by* :
**Kalyani Printers**
Dolamundai,Cuttack

*Designed by* :
**Sri Siba Panigrahi**

**PRICE—RUPEES FIVE**

# କଥାର ଲଥା

'ଅଜା ଆମର ମଜା କଲେ' ଖଣ୍ଡେ ପିଲାଙ୍କୁ ଭଲ ଲାଗିଲା ଭଳି ଗପ ବହି । ଏହାର ଗପଗୁଡ଼ିକ 'ଶିଶୁ-ଲେଖା', 'ମୋତିମାଣିକ', ଆଦି ଶିଶୁ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା । ଯେତେ ବୁଢ଼ା ହେଲେ ବି ଅଜାଙ୍କର କଥା ମଜା ଲାଗେ । ଯେତେ ଶୁଣିଲେ ବି ତା ଭିତରୁ ନୂଆ ନୂଆ ମିଠା ଭାବ ବାହାରୁଥାଏ ।

'ସମାଜ'ର ସହ ସମ୍ପାଦକ ଶ୍ରୀ ନାରାୟଣ ମହାପାତ୍ରଙ୍କ ଘର ପୁରୀ ଜିଲାର ବଳଭଦ୍ରପୁର ଗାଁରେ । ସେ ଜଣେ ଶିଶୁ-ସାହିତ୍ୟିକ ଭାବେ ଖ୍ୟାତି ଲଭିଛନ୍ତି ଓ ଅଧିକ ଖ୍ୟାତି ସମ୍ପନ୍ନ ହେବେ, ମୋର ଦୃଢ଼ ବିଶ୍ୱାସ ।

ଏ ବହିର ଲେଖା ଢଙ୍ଗ ସରଳ ତରଳ ଓ ସ୍ୱାଭାବିକ । ପିଲାଙ୍କୁ ଭାରି ଭଲ ଲାଗିବ ।

| | | |
|---|---|---|
| କଟକ—୩ | } | ଲୋକରତ୍ନ ଡ଼କ୍ଟର କୁଞ୍ଜବିହାରୀ ଦାଶ<br>ଉଦୟପୁରୀ, ମହତାବ ରୋଡ଼ |

# ଉତ୍ସର୍ଗ

ଆଗାମୀ ଯୁଗର ବଂଶଧର ଓ ଆଗାମୀ ସମାଜର ତତ୍ତ୍ୱାବଧାରକ ବୁବୁ, ଦିପୁ,
ସିମି, ଝଟା, ଗିନା, ମାମିନା, ବାପିନା, ବୁଢ଼ିଆ, ଲଟି,
କ୍ଷିତ, ମିଲୁ, ମିନ, ବାବୁଲୁଙ୍କ ହାତରେ—

ଲେଖକ

# ପଦେ ଅଧେ

ପିଲମାନେ, ତୁମ ଜୀବନରେ ପ୍ରତ୍ୟେକ ବ୍ୟକ୍ତି, ଜୀବଜନ୍ତୁ ଓ କୀଟ ପତଙ୍ଗଠାରୁ ବହୁ ଜିନିଷ ଶିଖିବାର ରହିଛି । ତେଣୁ ଜୀବନରେ କାହାରିକୁ ଶ୍ରେଷ୍ଠ ବୋଲି ବିଚାରିବା ଉଚିତ ନୁହେଁ, କି ଘୃଣା କରିବା ଉଚିତ ନୁହେଁ । ଈଶ୍ୱରଙ୍କ ସୃଷ୍ଟିରେ ସମସ୍ତେ ସମାନ । ପୃଥିବୀ ରଙ୍ଗମଞ୍ଚରେ କେବଳ ପ୍ରତ୍ୟେକେ ପ୍ରତ୍ୟେକଙ୍କର ଅଭିନୟ କରୁଛନ୍ତି । "ଅଜା ଆମର ମଜା କଲେ" ପୁସ୍ତକରେ ଯେଉଁ ଅଭିନୟ ଭିତରୁ ଅଜାଙ୍କର ମାତ୍ର ଛଅଟି ଅଭିନୟର ଗପ ରହିଛି ।

ଏହି ପୁସ୍ତକଟି ଲେଖିବା ଦିଗରେ ମୋର ପରମପୂଜ୍ୟ 'ସମାଜ'ର ବାର୍ତ୍ତା ସଂପାଦକ ଓ ବରିଷ୍ଠ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀଙ୍କ ପ୍ରେରଣା, ବନ୍ଧୁ ଶ୍ରୀ ମୁରଲୀଧର ମଲ୍ଲିକ, ପଣ୍ଡିତ ଶ୍ରୀ ପ୍ରବୋଧକୁମାର ମିଶ୍ରଙ୍କ ଉତ୍ସାହ, ମୋର ଧର୍ମପତ୍ନୀ ଶ୍ରୀମତୀ ସୁଷମା ମହାପାତ୍ରଙ୍କ ସାହାଯ୍ୟ ଏବଂ କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋରର ଶ୍ରୀ କାଳିଚରଣ ତ୍ରିପାଠୀ ଓ ଶ୍ରୀ ଗଙ୍ଗାଧର ତ୍ରିପାଠୀ ଆଗ୍ରହର ସହିତ ପୁସ୍ତକଟି ପ୍ରକାଶ କରି ଲୋକ ଲୋଚନକୁ ଆଣିଥିବାରୁ ଏବଂ ପରମପୂଜ୍ୟ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ ପାଣ୍ଡୁଲିପିଟି ପଢ଼ି ତାଙ୍କର ସୁଚିନ୍ତିତ ମତାମତ ଦେଇଥିବାରୁ ସମସ୍ତଙ୍କୁ ଅନ୍ତରର ଗଭୀର କୃତଜ୍ଞତା ଜଣାଉଛି ।

**ନାରାୟଣ ମହାପାତ୍ର**

ତା ୨୦ । ୧୨ । ୧୯୮୦

ଶେଖ ବଜାର, ନଜ କଲୋନୀ
ପୋ : ତୁଳସୀପୁର, କଟକ-୮

# ସୂଚୀପତ୍ର

# ଚତୁର ଅଜା

ଅଜାଙ୍କ କଥା ପଡ଼ିଲେ ଅଜୟ ହସି ହସି ଗଡ଼ିଯାଏ । ସେ ଦିନ ମଧ୍ୟ ସେହି ଘଟଣା ଘଟିଲା । ଶ୍ରେଣୀରେ ସାହିତ୍ୟ ଶିକ୍ଷକ ପଢ଼ାଇବାକୁ ଆରମ୍ଭ କଲାବେଳେ, ଅଜୟର ତା ଅଜାଙ୍କ କଥା ମନେପଡ଼ିଲା ଏବଂ ତାର ହସ ଆରମ୍ଭ ହୋଇଗଲା । ଶ୍ରେଣୀର ଅନ୍ୟ ପିଲାମାନେ ଅଜୟ ଆଡ଼କୁ ଚାହିଁ ରହିଲେ । ସାହିତ୍ୟ ଶିକ୍ଷକ ବିରକ୍ତ ହୋଇ ଅଜୟକୁ କହିଲେ—"କାନ ଧରି ବେଞ୍ଚ ଉପରେ ଠିଆ ହୁଅ । ବଦମାସ, ପାଠ ପଢ଼ାଇଲାବେଳେ ପୁଣି ହସ । ଯାହାତ ପରୀକ୍ଷାରେ ସବୁ କରୁଛ ତା ଜଣାଶୁଣା ।"

ଅଜୟ ବେଞ୍ଚ ଉପରେ କାନଧରି ଠିଆହେଲା ସତ, ତଥାପି ହସିଲା । ଅଜୟକୁ ଶ୍ରେଣୀରୁ ବାହାରିଯିବାକୁ ଶିକ୍ଷକ ଆଦେଶ ଦେଲେ । ମାତ୍ର ଅଜୟର ଅନ୍ୟ ଜଣେ ସାଥୀ ବିଜୟ କହିଲା—"ସାର୍ ! ଅଜୟ ଅଜାଙ୍କ କଥା ଶୁଣିଲେ ଆପଣ ମଧ୍ୟ ନ ହସି ରହି ପାରିବେ ନାହିଁ ।"

ସାହିତ୍ୟ ଶିକ୍ଷକଙ୍କୁ କଥାଟି କୌତୁହଳ ଭଳି ମନେ ହେଲା । ସେ କହିଲେ—"ଆଚ୍ଛା କଅଣ ତାଙ୍କ ଅଜାଙ୍କ କଥା କୁହ ତେବେ ଶୁଣିବା । ଆଜି ପାଠପଢ଼ା ବନ୍ଦ ରହୁ ।"

ଶ୍ରେଣୀଯାକ ସବୁ ଛାତ୍ରଛାତ୍ରୀ ଅଜୟ ଅଜାଙ୍କ କଥା ଶୁଣିବା ପାଇଁ ଆଗ୍ରହ ପ୍ରକାଶ କଲେ । ବିଜୟ କହିଲା—"ଅଜୟ ନିଜେ ତା ଅଜାଙ୍କ କଥା କହୁ ।"

ସାହିତ୍ୟ ଶିକ୍ଷକ ଅଜୟକୁ ସାମନାକୁ ଡାକି ଠିଆ କରାଇଲେ । କହିଲେ—"ତୁମ ଅଜା କଅଣ ଏଭଳି କାମ କରିଛନ୍ତି ଯେ, ତୁମକୁ ତାଙ୍କ କଥା ମନେ ପଡ଼ିଲେ ହସ ମାଡୁଛି ? ଏଇଠି ମୋ ପାଖରେ ଠିଆହୋଇ ତୁମ ଅଜାଙ୍କ କଥା ବଡ଼ ପାଟିରେ କୁହ । ମୁଁ ଶୁଣିବି, ତୁମ ସାଙ୍ଗ ପିଲାମାନେ ମଧ୍ୟ ଶୁଣିବେ ।"

ଅଜୟ ଗଳା ସଫାକରି ଆରମ୍ଭକଲା—"ଅଜା ଆମର ସରକାରୀ ଚାକିରିରୁ ଅବସର ନେବାପରେ ଏବେ ଏଠି କଟକ ସହରରେ ଗୋଟିଏ କାଠ ଜିନିଷ ତିଆରି କାରଖାନାରେ ମ୍ୟାନେଜର ଅଛନ୍ତି । ତାଙ୍କ ତଳେ ଆଉ ଦୁଇଜଣ କିରାଣି । ସେହି କାରଖାନାରେ ବିଭିନ୍ନ ପ୍ରକାରର ଚୌକି, ବେଞ୍ଚ, ଆଲମିରା, ଟେବୁଲ, ର୍ୟାକ୍ ପ୍ରଭୃତି ତିଆରି ହୁଏ । 'ହେଡ଼ ମିସ୍ତ୍ରୀ'କୁ

ମିଶାଇ ପ୍ରାୟ ତିରିଶଜଣ ପର୍ଯ୍ୟନ୍ତ କାରିଗର କାମ କରନ୍ତି । କାରଖାନାର ମାଲିକ ବି.ଏ. ପାଶ କରିବା ପରେ ଆଉ ଚାକିରି ପ୍ରତି ମନ ନ ବଳାଇ ଏହି କାରଖାନାଟି କରିଛନ୍ତି । ନିଜେ ବାହାରକୁ ଯାଇ ସରକାରୀ ବେସରକାରୀ ସଂସ୍ଥାରୁ କାମ ଆଣନ୍ତି । ବିଭିନ୍ନ ପ୍ରକାରର କାଠ କିଣିବା ପାଇଁ ମଧ୍ୟ ତାଙ୍କୁ ଦଶପଲ୍ଲା, ନରସିଂହପୁର, ଆଠଗଡ଼, ଢେଙ୍କାନାଳ, ରେଢାଖୋଲ ପ୍ରଭୃତି ଅଞ୍ଚଳକୁ ଯିବାକୁ ପଡ଼େ ।"

ସେଦିନ ଅଜାଙ୍କ ମାଲିକ ପୁରୀକୁ କାମ ବରାଦ ଆଣିବାକୁ ଯାଇଥିଲେ । ସେ ପୁରୀରୁ ଅଜାଙ୍କ ପାଖକୁ ଫୋନକରି କହିଲେ—"ମୁଁ ଆସନ୍ତାକାଲି ରବିବାର ସକାଳ ପୁରୀ-ଦଶପଲ୍ଲା ବସରେ ଦଶପଲ୍ଲା ଯିବି । ମୋ ପାଖରେ ଯାହା ଟଙ୍କା ଅଛି, ତା ଅଗ୍ରିମ ଦେଇଛି । ତେଣୁ ଆପଣ କ୍ୟାସରୁ ହଜାରେ ଟଙ୍କା ଧରି ଭୁବନେଶ୍ୱର ବସଷ୍ଟାଣ୍ଡଠାରେ ସକାଳ ନଅଟାବେଳେ ଆସି ପହଞ୍ଚିଥିବେ । ଆପଣଙ୍କୁ ମଧ୍ୟ ଆଉ କେତେକ କଥା ମୋର କହିବାର ଅଛି ।"

ଅଜା ରବିବାର ଦିନ ସକାଳୁ ଉଠି ନିତ୍ୟକର୍ମ ସାରି ତରବର ହୋଇ ଭୁବନେଶ୍ୱର ବାହାରିଲେ । ବେଳ ହୋଇଯାଉଛି । ମାଲିକ ଭୁବନେଶ୍ୱର ବସଷ୍ଟାଣ୍ଡରେ ନଅଟାବେଳେ ଆସି ପହଞ୍ଚିବାକୁ କହିଛନ୍ତି । ତେଣୁ ଅଜା ଠିଆରେ ଠିଆରେ ଦି'ଟା କଅଁଳ ପାଟିରେ ପକାଇ ଦେଇ ଲୁଗାପଟା ପିନ୍ଧିବାକୁ ଗଲେ । ଆଗ ଧୋତି ପିନ୍ଧିଲେ । ତା ଉପରେ, ଗଞ୍ଜି, ଗଞ୍ଜି ଉପରେ ପୁରାହାତ ଥିବା ଜାମା, କିଏ କାଳେ ଘରେ ଦେଖି ପକାଇବ, ସେଥିପାଇଁ ଏଣିକି ତେଣିକି ଚାହିଁ ଶହେଟଙ୍କିଆ ନୋଟ ଦଶଖଣ୍ଡି ଦଶଥର ଗଣି ଜାମାର ଉପର ପକେଟରେ ରଖିଲେ । ଖରାଦିନ ହୋଇଥିଲେ ସୁଦ୍ଧା ଜାମା ଉପରେ ଖଇରିଆ ରଙ୍ଗର ସ୍ୱେଟରଟି ପିନ୍ଧିଲେ । ପୁଣି ପକେଟ ଘୋଡ଼ାଇ ହେବା ଭଳି କାନ୍ଧ ଉପରେ ଚଦରଟିଏ ପକାଇଲେ । ଛତାଟି ହାତରେ ଧରି ବାହାରିଲାବେଳକୁ ସମୟ ସାତଟା । ମତେ ପଚାରିଲେ—"ଅଜୟ ତୁ ଭୁବନେଶ୍ୱର ଯିବୁ ?"

ମୋର ତ ସେଦିନ ସ୍କୁଲ ଛୁଟିଥାଏ । କେଜାଣି କାହିଁକି, ମୋ ମନ ଟିକିଏ ଭୁବନେଶ୍ୱର ବୁଲି ଆସିବାକୁ ଡାକିଲା । ମୁଁ ତାଙ୍କ କଥା ଶୁଣି ସାଥି ସାଥି ଜାମା ପେଣ୍ଟ ପିନ୍ଧି ବାହାରି ପଡ଼ିଲି । ଆଈ ମୋତେ ହଠାତ୍ ବାହାରିବାର ଦେଖି ମହା ଖପା ହେଲେ । କହିଲେ—"କିଛି ଖାଇନୁ । ଗାଧୋଇନୁ । ଅଜାଙ୍କ କଥାରେ ପଡ଼ି ପାଗଳଙ୍କ ପରି ବାହାରି ପଡ଼ିଲୁ । ଆ, କଅଣ ଟିକିଏ ଖାଇବୁ ।"

ଅଜା ଏଣୁ ପାଟିକରି ଉଠିଲେ—"ସାତଟା ବାଜିଲାଣି । ମୁଁ ଆଉ ଦାଣ୍ଡ ରହି ପାରିବ ନାହିଁ । ମୋତେ ଯେ କୌଣସି ପ୍ରକାରେ ବାଦାମବାଡ଼ି ବସଷ୍ଟାଣ୍ଡକୁ ରିକ୍ସାରେ ଯାଇ ବସ ଧରିବାକୁ ପଡ଼ିବ । ଅତଏବ ମୋ ସାଙ୍ଗରେ ନ ଯାଇ ଘରେ ଥାଉ ।"

ମୋର ତ ଅଜାଙ୍କ ସାଙ୍ଗରେ ଭୁବନେଶ୍ୱର ଯିବାକୁ ମନ ଲାଗିଥାଏ । ମୁଁ ଆଈଙ୍କୁ କହିଲି—"ଅଜାଙ୍କ ସାଙ୍ଗରେ ମୁଁ ଯାଉଛି । ବାଟରେ କଅଣ ଟିକିଏ ଖାଇ ନେବି ।

ଅଜା, ନାତି ଆମେ ଚଣ୍ଡୀ ମନ୍ଦିର ପାଖରୁ ରିକ୍ସା ଖଣ୍ଡିଏ ଧରି ବାଦାମବାଡ଼ି ଗଲୁ । ଅଜା ରିକ୍ସାରେ ମୋତେ ଟଙ୍କା ଆଉ ରେଜା ପଇସା ମିଶାଇ ଦଶଟଙ୍କା ଦେଇ କହିଲେ ବାଟରେ ରିକ୍ସା, ବସଭଡ଼ା ଯାହାସବୁ ଖର୍ଚ୍ଚ ହେବ, ଏଇ ଟଙ୍କାରୁ ଦେବୁ ।"

ମୁଁ ହଁ ବୋଲି କହି ଖୁସି ହୋଇ ଅଜାଙ୍କ ପାଖରେ ରିକ୍ସାରେ ବସିଥାଏ । ଅଜା ସବୁବେଳେ ତାଙ୍କ ବାଁ ହାତରେ ଟଙ୍କା ଥିବା ଜାମା ପକେଟକୁ ଚଦର ସହିତ ଧରିଥାନ୍ତି । ବାଦାମବାଡ଼ି ବସଷ୍ଟାଣ୍ଡରେ ରିକ୍ସାରୁ ଓହ୍ଲାଇଲୁ । ଭଡ଼ା ଦେଇ ମୁଁ ରିକ୍ସାବାଲାକୁ ବିଦାୟ କରିଦେଲି । ଟଙ୍କାକର କମଳା କିଣି, ଛଡ଼ାଇ କୁଳାଏ କୁଳାଏ ଖାଇ ଅଜାଙ୍କ ପଛେ ପଛେ ଗଲି ।

ଅଜା ଭୁବନେଶ୍ୱର ବସ ଖୋଜିବା ପାଇଁ ବାଦାମବାଡ଼ି ବସ ଷ୍ଟାଣ୍ଡରେ ପକେଟ ମିଶା ଚଦରକୁ ବାଁ ହାତରେ ଧରି ଏପଟ ସେପଟ ହେଉଥାନ୍ତି । କେତେ ବସ ଆସୁଥାଏ ଯାଉଥାଏ । ମାତ୍ର ଭୁବନେଶ୍ୱର ବସ ଆସି ନଥାଏ । ଏହି ସମୟରେ ଅଜାଙ୍କର ଜଣେ ସାଙ୍ଗ ଦେଖା ହେଲେ । ସେ ଅଜାଙ୍କ ଉଦ୍ଦେଶ୍ୟରେ କହିଲେ—"ଦୁର୍ଯୋଧନ ବାବୁ, ନମସ୍କାର ।"

ଅଜା କେବଳ ଛତା ସହିତ ଡାହାଣ ହାତଟି ଟେକି ପ୍ରତି ନମସ୍କାର ଜଣାଇଲେ । ମାତ୍ର ବାଁ ହାତଟି ସେହି ବାଁ ପାଖ ପକେଟ ଉପରେ ଚଦର ମିଶା ହୋଇ ରହିଥିଲା ।

ସେ ଭଦ୍ର ଲୋକଟି କହିଲେ--"କୁଆଡ଼େ, ଭୁବନେଶ୍ୱର ଯିବେକି ? ଏତେ ତରବର କାହିଁକି ? ମୁଁ ମଧ୍ୟ ସେହି ଭୁବନେଶ୍ୱର ଯିବି । ବସ୍ ଆସିନି । ବେଳ ହୋଇଗଲାଣି । ଏଇ ଆସି ପହଞ୍ଚିବ ।"

ଅଜାଙ୍କର ତାଙ୍କର ଗପସପ ଚାଲିଲା । ମୁଁ ସେମାନଙ୍କ ପଛରେ ଠିଆ ହୋଇଥାଏ । ଗପସପ ମଝିରେ ସେ ଭଦ୍ରଲୋକ ପଚାରିଲେ--"ଆପଣଙ୍କର ବାଁ କାଖରେ କାଖଫୁଲ ହୋଇଛି ନା କଅଣ ? ସେ ହାତକୁ ତ କାହିଁକି ତଳକୁ ପକାଉ ନାହାନ୍ତି ?"

ଅଜା କହିଲେ--"ଆଜ୍ଞେ, ପକେଟରେ ଟଙ୍କା ଅଛି ଟଙ୍କା। ହଜାରେ ଟଙ୍କା ଆଣିଛୁ। ମାଲିକ ପୁରୀରୁ ଆସି ଭୁବନେଶ୍ୱର ଦେଇ ଦଶପଲ୍ଲା ଯିବେ। କାଲି ଫୋନ୍ କରିଥିଲେ। ତାଙ୍କୁ ଦବାକୁ ଯାଉଛୁ କ।"

ସେ ଭଦ୍ରଲୋକ କହିଲେ--"ଏତେ ଭୟ କାହିଁକି ? ଦିନଟାରେ କିଏ କଅଣ ପକେଟ କାଟି ନେଇ ଯାଉଛି ?"

ଅଜା କହିଲେ--"ଆପଣ ଜାଣନ୍ତି ନ। ଯେଉଁ, ପକେଟମାରଙ୍କ ପକ୍ଷରେ ଦିନରାତି ସବୁ ସମାନ।"

ଅଜା ଟଙ୍କା ଆଣିବା କଥା ଏତେ ପାଟିରେ କହୁଥିଲେ ଯେ, ମୁଁ ମନେ ମନେ ତାଙ୍କ ଉପରେ ବିରକ୍ତ ହେଉଥିଲି। ଭାବୁଥିଲି--ପ୍ରକୃତରେ ଅଜା ପକେଟରେ ଟଙ୍କା ରଖି ଯେପରି ଅଭିନୟ କରୁଛନ୍ତି, ଆଉ ଛାତିରୁ ବାଁ ହାତ ବାହାର କରୁନାହାନ୍ତି, ସେଥିରେ ଯେ ଇଚ୍ଛା ସେ ତାଙ୍କୁ ସନ୍ଦେହ କରିବ।

ଏହି ସମୟରେ ଭୁବନେଶ୍ୱର ବସ ଆସିଲା। ସେ ଭଦ୍ରଲୋକଙ୍କ ସହିତ ଆମେ ଦୁହେଁ ବସରେ ବସିଲୁ। ବସ ଭୁବନେଶ୍ୱର ଚାଲିଲା। ତଥାପି ଅଜାଙ୍କ ବାଁ ହାତ ଚଦର-ଢଙ୍କା ଛାତି ପକେଟରୁ ତଳକୁ ଖସିଲା ନାହିଁ। କେତେଥର ବସ ଭିତରେ ମୁଁ ଅଜାଙ୍କୁ ସିଧା ସଳଖ ବସିବାକୁ କହିଲି। ସେଥିରେ ସେ ବିରକ୍ତି ପ୍ରକାଶ କଲେ ସିନା, ହେଲେ ତାଙ୍କର କିଛି ପରିବର୍ତ୍ତନ ହେଲା ନାହିଁ।

ବସ ଭୁବନେଶ୍ୱର ବସ ଷ୍ଟାଣ୍ଡରେ ଯାଇ ରହିଲା। ସେ ଭଦ୍ରବ୍ୟକ୍ତିଙ୍କ ସହିତ ଆମେ ଓହ୍ଲାଇଲୁ। ଭଦ୍ରଲୋକ ଅଜାଙ୍କୁ ନମସ୍କାର କରି ବିଦାୟ ନେଲେ।

ଅଜା ସେମିତି ବାଁ ହାତଟି ଚଦର ମିଶା ପକେଟ୍ ଉପରେ ରଖି ଦଶପଲ୍ଲା ବସ ଖୋଜିବାରେ ଲାଗିଲେ। ମୁଁ ତାଙ୍କପଛେ ପଛେ ଚାଲିଥାଏ।

ଏହି ସମୟରେ ଅଜାଙ୍କର ଆଉ ଜଣେ ଦୁଇଜଣ ଚିହ୍ନା ଲୋକ ଦେଖା ହେଲେ। ସେମାନେ ମଧ୍ୟ ଅଜାଙ୍କ ସହିତ କଥାବାର୍ତ୍ତା ହେଲାବେଳେ ବାଁ ହାତରେ କଅଣ ହୋଇଛି ବୋଲି ପଚାରିଲେ।

ଅଜା ସେମାନଙ୍କୁ ମଧ୍ୟ କହିଲେ--"ଆଜ୍ଞେ ନାହିଁ ହେ। ହାତରେ ବା କାଖରେ ମୋର କାହିଁକି କଅଣ ହେବ ? ଟଙ୍କା ହଜାରେ ଆଣିଛୁ। ଦଶପଲ୍ଲା ବସରେ ମାଲିକ ଆସିବେ। ତାଙ୍କ ହାତକୁ ସେତକ ବଢ଼ାଇ ଦେଲେ ମୁଁ ଖାଲି।"

ସେମାନେ ମଧ୍ୟ ଏଭଳି ପକେଟ ଉପରେ ହାତରଖି ସମସ୍ତଙ୍କୁ ଟଙ୍କା ଅଛି ବୋଲି ଜଣାଇ ଦେବା ଉଚିତ ନୁହେଁ ବୋଲି କହିଲେ ଏବଂ ସାଧାରଣ ଭାବରେ ଯିବା ଆସିବା କରିବାକୁ ପରାମର୍ଶ ଦେଲେ ।

ଅଜା କହିଲେ--"ମୁଁ କଅଣ ମୋ ପକେଟରେ ଟଙ୍କା ରଖିଛି ବୋଲି ଅନ୍ୟ କାହାକୁ କହୁଛି ନା ଦେଖାଉଛି ? ଆପଣମାନେ ନିଜର ଲୋକ, ପଚାରିବାରୁ କହିଲି ।"

ସେମାନେ କହିଲେ--"ସାଧାରଣ ଲୋକଙ୍କଠାରୁ ଢେର ପକେଟମାର ବହୁତ ଚାଲାକ୍ । ତେଣୁ ଆମର ସାବଧାନ ରହିବା ଉଚିତ ।

ଏହି ସମୟରେ ଦଶପଲ୍ଲା ବସ ଆସି ଭୁବନେଶ୍ୱର ବସ ଷ୍ଟାଣ୍ଡରେ ପହଞ୍ଚିଲା । ଅଜା ତରବର ହୋଇ ସେ ଆଡ଼କୁ ଦୌଡ଼ିଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଦୌଡ଼ୁଥାଏ ।

ଅଜାଙ୍କ ମାଲିକ ଦଶପଲ୍ଲା ବସ୍‌ର ଉପର ଶ୍ରେଣୀ ଜାଗାରେ ବସି ଆସିଥାନ୍ତି । ବସର ଝରକା ପାଖରେ ବସିଥାନ୍ତି । ସେ ଅଜାଙ୍କୁ ଦେଖି ଝରକାରେ ମୁହଁ ଗଳାଇ ଡାକ ପକାଇଲେ --"ଦୁର୍ଯୋଧନ ବାବୁ, ଦୁର୍ଯୋଧ ବାବୁ ! ଏଣେ ଆସନ୍ତୁ ।"

ସେତେବେଳକୁ ଦଶପଲ୍ଲା ବସରୁ ଯାତ୍ରୀ ଓହ୍ଲାଇବା ଓ ଚଢ଼ିବାପାଇଁ ଭାରି ଭିଡ଼ ହୋଇଥାଏ । ଅଜା ତାଙ୍କ ମାଲିକଙ୍କ ଡାକ ଶୁଣି ସେହି ଭିଡ଼ ଭିତରେ ଲୋକଙ୍କୁ ପେଲି ବସ ପାଖକୁ ଗଲେ । ମାଲିକଙ୍କୁ ଦେଖି "ଆଜ୍ଞା ନମସ୍କାର" ବୋଲି ବଡ଼ ପାଟିରେ କହି ଦୁଇହାତ ଟେକି ନମସ୍କାର କଲେ । ଏହି ସମୟରେ କାନ୍ଧରୁ ଚଦରଟି ଓ ହାତରୁ ଛତାଟି ତଳେ ଖସି ପଡ଼ିଲା । ଭିଡ଼ ଭିତରେ ଲୋକେ ତାଙ୍କୁ ଟିକିଏ ଠେଲାପେଲା କରିଦେଲେ । ମୁଁ ଅବଶ୍ୟ ତାଙ୍କ ପାଖରେ ନଥିଲେ ମଧ୍ୟ ପଛରେ ଥାଏ । ଅଜା ତଳୁ ଚଦର ଓ ଛତା ଗୋଟାଇ ସିଧା ହୋଇ ଠିଆହେଲା ବେଳକୁ ତାଙ୍କ ମାଲିକ ପଚାରିଲେ—"ଟଙ୍କା ଆଣିଛ ? ଦିଅ ।"

ଅଜା ତରବରରେ ସ୍ୱେଟର ଭିତରେ ହାତ ପୂରାଇ ଜାମା ପକେଟରୁ ଟଙ୍କା କାଢ଼ିବାକୁ ଯାଇ ଦେଖିଲେ, ଟଙ୍କା ତ ଟଙ୍କା, ଉପର ପକେଟରେ ଥିବା କାଗଜପତ୍ରଗୁଡ଼ିକ ଖଣ୍ଡିଏ ହେଲେ ନାହିଁ ।

ସାହିତ୍ୟ ଶିକ୍ଷକ ଓ ଶ୍ରେଣୀର ପିଲାମାନେ ପଚାରିଲେ—"କଅଣ ଟଙ୍କା ଯାକ ସବୁ ଶେଷ ହୋଇଗଲା ?"

ଅଜୟ କହିଲା—"ଆଉ ହବ କଅଣ ? ଅଜା ପକେଟରେ ଟଙ୍କା ରଖି ଯେଉଁ ଅଭିନୟ କରୁଥିଲେ ଏବଂ ବାଟରେ ଯାହାଙ୍କୁ ଦେଖିଲେ ତାଙ୍କୁ ପକେଟରେ ଟଙ୍କା ଅଛି ବୋଲି ଏତେ ପାଟିରେ ଯେଉଁଭଳି ଭଙ୍ଗୀରେ କହୁଥିଲେ, ତାହା ଠଉରାଇ କୌଣସି ଚୋର କ ପକେଟମାର ତାଙ୍କର ପିଛା ଧରିଥିଲା । ଅଜା ତଳକୁ ଚଦର ଛତା ଉଠାଇଲାବେଳେ ଟଙ୍କା ଚାଲି ପକେଟମାର କରି କେହି ନେଇ ଗୃଲିଗଲା ।

ଶିକ୍ଷକ ପଚାରିଲେ—"ତାପରେ କଅଣ ହେଲା ?"

ଅଜୟ କହିଲା—"ସାର୍, ଆଉ ହବ କଅଣ ? ଅଜା "ମୋ ଟଙ୍କା" "ମୋ ଟଙ୍କା" ବୋଲି ହାଉଳି ଖାଇ ବେହୋସ ହୋଇ ତଳେ ପଡ଼ିଗଲେ । ମାଲିକ ଆଉ ଦଶପଞ୍ଚା ଯିବେ କଅଣ ? ତାଙ୍କ ସିବା କଦଳୀର ଆମ୍ବୁଲାନ୍‌ସ ଡକାଇ ଅଜାଙ୍କୁ ନେଇ ଭୁବନେଶ୍ୱର ଡାକ୍ତରଖାନାରେ ଭର୍ତ୍ତି କଲେ । ମୁଁ ପାଖେ ପାଖେ ଅଜାଙ୍କର ରହିଲି । ଆଈ ଖବର ପାଇ ଭୁବନେଶ୍ୱର ଡାକ୍ତରଖାନାକୁ ଆସିଲେ । ଅଜା ଭଲ ହୋଇ କଟକ ଫେରିଲେ ବେଳକୁ ଅଠଦିନ ଲାଗିଥିଲା ।

ସାହିତ୍ୟ ଶିକ୍ଷକ ପଚାରିଲେ—"ମାଲିକ କଅଣ ସେ ଟଙ୍କା ଅଜାଙ୍କୁ ଛାଡ଼ି ଦେଲେ ?

ଅଜୟ କହିଲା—"ମାଲିକ କଅଣ ଏତେ ପାଗଳ ଯେ ଏତେ ଟଙ୍କା ଛାଡ଼ି ଦେବେ ? ଓଲଟି ଆମ୍ବୁଲେନ୍‌ସ ଭଡ଼ା, ଡାକ୍ତରଖାନା ଔଷଧ ପତ୍ରକୁ ମିଶାଇ ଆହୁରି ଅଧିକ ଦୁଇଶହ ଟଙ୍କା ହିସାବ କରି ନେଲେ । ସେ ଟଙ୍କା ଅଜାଙ୍କୁ ଶୁଝୁ ଶୁଝୁ ଦୁଇବରଷ ଲାଗିବ ।

ଏହି ସମୟରେ ସ୍କୁଲ ଘଣ୍ଟା ବାଜିଲା । ସାହିତ୍ୟ ଶିକ୍ଷକ ପାଠ୍ୟ ନାଟଶ୍ଳୋକଟିଏ ପଢାଇ ଅନ୍ୟ ଶ୍ରେଣୀକୁ ପଢ଼ାଇବାକୁ ଗଲେ । ଶ୍ରେଣୀ ପିଲାମାନେ ଅଜୟକୁ ଘେରିଗଲେ । କହିଲେ—"ତୁ ଆଜି ଗୋଟିଏ ମଜାକଥା କହିଲୁ ।"

ଅଜୟ ସମସ୍ତଙ୍କ ସାମନାକୁ ଆସି ବସି ବଡ଼ ପାଟିରେ ଘୋଷଣା କଲା—"ମୁଁ କାଲି ମୋ ଅଜାଙ୍କ କଥା କହିବି, କମିତି ମଜାଲାଗିବ, ଶୁଣିବ ।"

# ଅଜାଙ୍କ ଟଙ୍କାର ଯୋଗାଡ଼

ଗତକାଲିର ଘୋଷଣା ଅନୁସାରେ ଆଜ ବିଜୟ ତା ଅଜାଙ୍କ ବିଷୟରେ ଗପ କହିବାର କଥା । ଗପର ଆସର ସ୍କୁଲ ଛୁଟି ପରେ ଖେଳପଡ଼ିଆ ଭିତରେ ବସିଲା । ଶ୍ରେଣୀର ପିଲାମାନେ କେତେବେଳୁ ଆସି ବସିଲେଣି । ମାତ୍ର ବିଜୟର ଦେଖା ନାହିଁ ।

କିଛି ସମୟ ପରେ ବିଜୟ ଆସି ପହଞ୍ଚିଲା । ପିଲାମାନେ ତାକୁ ଦେଖି କହିଲେ ଭଲ ତ ! ଆମକୁ ବସିବାକୁ କହି ତୋର ଦେଖା ନାହିଁ ।

ଶଶାଙ୍କ କହିଲା—ତୁ ଆଜି ତୋ ଅଜାଙ୍କ ବିଷୟରେ କହିବୁ ବୋଲି କହିଥିଲୁ ନା ?

ବିଜୟ କହିଲା—"ନିଅ ଆଗ ପାଟି ସବୁ ମିଠା କର । ତାପରେ ଗପ ଶୁଣିବ । ସମସ୍ତଙ୍କ ହାତକୁ ଗୋଟିଏ ଗୋଟିଏ ଲଜେନସ ବଢ଼ାଇ ଦେଲା । ନିଜେ ଗୋଟିଏ ଲଜେନସ ଗାଲରେ ଯାକି ଆସରର ମଝିରେ ବସି ଆରମ୍ଭ କଲା—"ମୋ ଅଜାଙ୍କର ବୋଉ ଓ ମାଉସୀ ଦୁଇ ଝିଅ । ମୋ ମାଉସୀଙ୍କ ପୁଅ ଦିଲ୍ଲୀପ ଭାଇ ଯେତେବେଳେ ଗାଁ ସ୍କୁଲରେ ଦଶମ ଶ୍ରେଣୀରେ ପଢ଼ୁଥାନ୍ତି । ତାଙ୍କ ମୁଣ୍ଡରେ କି ଭୂତ ପଶିଲା କେଜାଣି, ସେ ହଠାତ୍ ଆଉ ପାଠ ପଢ଼ିବେ ନାହିଁ ବୋଲି ଗୋଟିଏ ନିଷ୍ପତ୍ତି ନେଇଗଲେ । ସେ ଆଉ ସ୍କୁଲକୁ ଗଲେନି । ସବୁବେଳେ ମାଉସୀଙ୍କ ପଛେ ଲଗାଇଲେ—ମୋତେ ଟଙ୍କା ଦେ, ମୁଁ ବ୍ୟବସାୟ କରିବି । ଏଣେ ମଉସା ପାଠପଢ଼ିବା କଥା କହିଲେ, ସେ ଜିଦ୍ ଧରିଲେ—ମୁଁ ଆଗ ଟଙ୍କାଟା କ ବ୍ୟବସାୟ କରିବି, ତାପରେ ଯାଇ ପାଠପଢ଼ିବି ।

ଦିଲ୍ଲୀପ ଭାଇ କେତେବେଳେ କାହାକୁ କହିଲେ ସେ ସୈନ୍ୟବାହିନୀରେ ଚାଲିଯିବେ ତ, କାହାକୁ କହିଲେ—ବାପା ବୋଉ ସବୁବେଳେ ମୋ ସାଥିରେ ପାଠ ପଢ଼ିବାକୁ ଲଗାଇଲେ, ମୁଁ ଘର ଛାଡ଼ି କୁଆଡ଼େ ପଳେଇ ଯିବି ।

ଦିଲ୍ଲୀପ ଭାଇଙ୍କର ଏ ଝୁଙ୍କି ଓ ବଦଖିଆଲି ଜିଦ ଦେଖି ମଉସା, ମାଉସୀ ଓ ଗାଁ ଲୋକେ ଆଶ୍ଚର୍ଯ୍ୟ ହେଲେ । ପରସ୍ପର କହିବାର ଶୁଣାଗଲା—"ଦେଖ ସେ । ନବଦନ ସାରେ କେତେ ପିଲାଙ୍କୁ ପଢ଼ାଇ ମଣିଷ କରୁଛନ୍ତି, କେତେ ବାଜୁଙ୍ଗା, ବହୁଆଡି ପିଲାଙ୍କୁ ଅବାଟରୁ ବାଟକୁ ଆଣୁଛନ୍ତି, ତାଙ୍କର ପୁଅ ପୁଣି ପାଠ ନ ପଢ଼ି ଇମିତି ବେଢ଼ଙ୍ଗର ହେବ ବୋଲି କିଏ ଜାଣିଥିଲା !"

ଦଲ୍ଲୀପ ଭାଇ ଯୋଗୁଁ ତାଙ୍କ ଘରେ ସବୁବେଳେ ଅଶାନ୍ତ ଲାଗିରହିଲା । ମଉସାଙ୍କ ମନରେ ଦୁଃଖ ହେଲା—ସେ କେତେ କଷ୍ଟରେ ପାଠପଢ଼ି ଗାଁ ହାଇସ୍କୁଲରେ ଶିକ୍ଷକ ହେଲେ । ସେ ପୁଣି କେତେ ପିଲାଙ୍କୁ ପାଠ ପଢ଼ାଇ ଓକିଲ, ମାଜିଷ୍ଟ୍ରେଟ, ଡାକ୍ତର, ଇଞ୍ଜିନିଅର କଲେ । ଅଥଚ ନିଜ ପୁଅ ମୂର୍ଖ ହେଲା ।

ଦଲ୍ଲୀପ ଭାଇ ପାଠ ନ ପଢ଼ି ବାହାର ପିଲାଙ୍କ ସହିତ ଏଣେ ତେଣେ ବୁଲି ବାଡ଼ି-ପଡ଼ିଚୂଆ ଘରକୁ ଆଣିବା ଫଳରେ ମାଉସୀ ସବୁବେଳେ ବସି କାନ୍ଦିଲେ ।

ମଉସା ଦଲ୍ଲୀପ ଭାଇଙ୍କୁ ବହୁତ ବୁଝାଇଲେ । କହିଲେ—"ଦେଖ ଦଲ୍ଲୀପ ! ତୁ ପାଠ ପଢ଼ି ମାଟ୍ରିକ ଖଣ୍ଡେ ପାଶ କରିଯା । ତେଣିକି ଆଉ ପଢ଼ିଲେ ପଢ଼ା ନ ପଢ଼ିଲେ ନାହିଁ । ମାଟ୍ରିକ ଖଣ୍ଡେ ପାଶ କରିଥିଲେ, କେଉଁଠି ତ ହେଲେ କରଣୀ ଚାକିରିଟିଏ ପାଇବୁ । ବ୍ୟବସାୟ କଲେ ଲୋକେ ଅବଶ୍ୟ ଶିକ୍ଷିତ ପିଲାଟିଏ ବୋଲି ଟିକିଏ ସାହାଯ୍ୟ କରିବେ । ବର୍ତ୍ତମାନ ତୋର ଯେଉଁ ପାଠପଢ଼ା, ସେଥିରେ ତୋତେ ଚାକିରି ଦେବ କିଏ ? ତାପରେ ବ୍ୟବସାୟ କରିବାକୁ ହେଲେ ସେଥିପାଇଁ ତ ପାଣ୍ଠି ଦରକାର । ଆମର ଏତେ ପାଣ୍ଠି କାହିଁ ? ତୁ ବଡ଼ ପୁଅ ହୋଇ ଯଦି ପାଠ ନ ପଢ଼ି ବୁଲିବୁ, ତେବେ ଅନ୍ୟ ପିଲାମାନଙ୍କ ଉପରେ ତାର କି ପ୍ରଭାବ ପଡ଼ିବ ?"

ମଉସା ଯେତେ ବୁଝାଇଲେ, ସୁଦ୍ଧା ଦଲ୍ଲୀପ ଭାଇ ତାଙ୍କ ଜିଦ୍‌ରେ ଅଟଳ ରହିଲେ । ବରଂ ଏପରି ଅବସ୍ଥା ହେଲା, ସାମାନ୍ୟ ସାମାନ୍ୟ କଥାରେ ଦଲ୍ଲୀପ ଭାଇ ଚଉକିଠି ଘରର ଜିନିଷ ପତ୍ର ଫିଙ୍ଗି ଫୋପାଡ଼ି କରି ନଷ୍ଟକଲେ । ଛୋଟ ଭାଇ ଭଉଣୀମାନଙ୍କୁ ବିନା କାରଣରେ ବାଡ଼ଆପିଟା-କଲେ । କେତେବେଳେ ନିଜ ଖାଇବା ଭାତ ଥାଳି ଫୋପାଡ଼ିଲେ ତ, କେତେବେଳେ ଭାତ ହାଣ୍ଡି ନେଇ ଗୋରୁ ହାଣ୍ଡିରେ ଅଜାଡ଼ି ଦେଲେ । ଦଲ୍ଲୀପ ଭାଇଙ୍କ ଯୋଗୁଁ ଅଧିକାଂଶ ସମୟରେ ମଉସା, ମାଉସୀ ଓ ପିଲାମାନେ ଉପାସରେ ରହିଲେ ।

ଏକଥା ଆମ ଅଜାଙ୍କ କାନକୁ ଗଲା । ଅଜା ଥାଆନ୍ତି ଯେତେବେଳେ ଯେଉଁଠାରେ ଘରେଇ ବଡ଼ଗର ହେଉ ଆସିଥାନ୍ତି । ସେ ଭୁବନେଶ୍ୱରରେ କ୍ୱାଟର ପାଇ ରହୁଥାନ୍ତି ।

ହରି ପଚାରିଲା—"ବର୍ତ୍ତମାନ ଅଜା କେଉଁଠି କଅଣ କରୁଛନ୍ତି ?"

ବଜୟ କହିଲା—ସେ ଏବେ ଚାକିରିରୁ ଅବସର ନେବାପରେ ତାଙ୍କ ଗାଁରେ ରହୁଛନ୍ତି । ଅଜା ଦଲ୍ଲୀପଭାଇଙ୍କୁ ଚିଠି ଦେଇ ଭୁବନେଶ୍ୱର ଡକାଇଲେ । ମାତ୍ର ଦଲ୍ଲୀପ ଭାଇ ଗଲେ

ନାହିଁ । କିଛିଦିନ ପରେ ଅଜା ନିଜେ ମଉସାଙ୍କ ଘରକୁ ଆସିଲେ । ଦିଲ୍ଲୀପ ଭାଇଙ୍କୁ ସେ ମଧ୍ୟ ପାଠ ପଢ଼ିବାପାଇଁ ବହୁତ ବୁଝାଇଲେ । ଦିଲ୍ଲୀପ ଭାଇ ତାଙ୍କ କଥା ଶୁଣିଲେ ନାହିଁ । ତାଙ୍କର ସେହି ଜିଦ୍—"ମୁଁ ଚାକିରି ବା ବ୍ୟବସାୟ କରିବା ପରେ ଯାଇ ପାଠ ପଢ଼ିବି ।"

ଅଜା ଦିଲ୍ଲୀପ ଭାଇଙ୍କୁ ଆଉ କିଛି ନ କହି, ମଉସା ମାଉସୀଙ୍କ ସହିତ କେତେଣ ସବୁ କଥାବାର୍ତ୍ତା ହୋଇ ଭୁବନେଶ୍ୱର ଫେରି ଆସିଲେ । ଅଜା ଫେରିବାବେଳେ ମାଉସୀ ଦିଲ୍ଲୀପ ଭାଇଙ୍କ କଥା କହି ବହୁତ କାନ୍ଦିଲେ । ମାତ୍ର ଅଜା ତାଙ୍କୁ ଆଶ୍ୱାସନା ଦେଇ କହିଲେ—"ଦିଲ୍ଲୀପ କଥା ମୋତେ ଲାଗିଲା । ତୁମେମାନେ କିଛି ବ୍ୟସ୍ତ ହେବା ଦରକାର ନାହିଁ ।"

ଅଜା ଭୁବନେଶ୍ୱର ଫେରି ଆସିବା ପରେ ମଝିରେ ମାସେ ଖଣ୍ଡେ ଚାଲିଗଲା । ସେ ପର୍ଯ୍ୟନ୍ତ ମଉସା, ମାଉସୀ, କିମ୍ବା ଦିଲ୍ଲୀପ ଭାଇଙ୍କ ପାଖକୁ ସେ କୌଣସି ଚିଠିପତ୍ର ଦେଇ ନଥାନ୍ତି । ଦିନେ ହଠାତ୍ ଅଜାଙ୍କର ଖଣ୍ଡିଏ ଚିଠି ମଉସାଙ୍କ ପାଖରେ ଆସି ପହଞ୍ଚିଲା । ସେଥିରେ ଲେଖାଥିଲା "ଏଠା ଭିତରର ସେକ୍ରେଟାରିଏଟରେ ଦିଲ୍ଲୀପପାଇଁ ମୁଁ ଖଣ୍ଡିଏ ଚାକିରି ଯୋଗାଡ଼ କରିଛି । ହୁଏତ ନିଯୁକ୍ତିପତ୍ର ଅଳ୍ପଦିନ ଭିତରେ ପହଞ୍ଚିଯିବ । ଆଜିକାଲି ତ ଯେପରି ଚାକିରିର ସମସ୍ୟା, ନିଜ ଆଖିରେ ଦେଖୁଛ । ତେଣୁ ନିଯୁକ୍ତିପତ୍ର ପାଇବାମାତ୍ରେ ଦିଲ୍ଲୀପ ଯେପରି ଶୀଘ୍ର ଆସି ଚାକିରିରେ ଯୋଗ ଦିଏ, ତାର ବ୍ୟବସ୍ଥା କରିବ ।"

"ଆରେ ବାଃ, ମାଟ୍ରିକ ପାଶ ନ କରି ସେକ୍ରେଟାରିଏଟ ଭଳି ଜାଗାରେ ଚାକିରି ! ଏ ସୁଯୋଗ କେତେ ଜଣଙ୍କ ଭାଗ୍ୟରେ ଜୁଟେ ? ମତେ ଇମିତି ଖଣ୍ଡେ ଚାକିରି ମିଳନ୍ତା କି ? ମୁଁ ଏହି ବସିଲା ଜାଗାରୁ ଉଠି ସିଧା ସିଧା ଯାଇ ଚାକିରି ଉପରେ ହାଜର ହୋଇଯାଆନ୍ତି ।" ଅବିନାଶ ଖୁସି ହୋଇ ହଠାତ୍ ଉଠିପଡ଼ି ତାଳିମାରି ନାଚିବାରେ ଲାଗିଲା ।

ବିଜୟ କହିଲା—"କିମିତି ମଜା କଥା ହେଲା ଶୁଣ । କଥା ଶେଷ ପର୍ଯ୍ୟନ୍ତ ନଶୁଣି ଏପରି ଉଚ୍ଛନ୍ନ ହେଲେ ଚଳିବ ? ତାପରେ ସେ କହିବାକୁ ଲାଗିଲା—" ଅଜାଙ୍କ ଚିଠିଟି ମିଳିବାର ପାଞ୍ଚ ଛଅ ଦିନ ପରେ ଦିଲ୍ଲୀପ ଭାଇଙ୍କ ନାଁରେ ଆଉ ମଉସାଙ୍କ ମାର୍ଫତରେ ସେକ୍ରେଟାରିଏଟରୁ ଗୋଟିଏ ଚିଠି ଆସି ପହଞ୍ଚିଲା । ଚିଠିଟି ଇଂରାଜୀରେ ଲେଖାଥିଲା । ତାର ଓଡ଼ିଆ ଅନୁବାଦ ହେଉଛି "ଶ୍ରୀ ଦିଲ୍ଲୀପ କୁମାର ଦାସ, ସେକ୍ରେଟାରିଏଟରେ ଓ୍ୱାର୍କ ସୁପରଭାଇଜରଙ୍କ ଅଧୀନରେ କାଜୁଆଲ ଆସିଷ୍ଟାଣ୍ଟ ରୂପେ ନିଯୁକ୍ତ ହେଲେ । ଏ ନିଯୁକ୍ତି ପତ୍ର ପାଇବାର ପନ୍ଦରଦିନ ଭିତରେ ଆସି ଜଏନ ନ କଲେ, ତାଙ୍କର ଏ ନିଯୁକ୍ତି ଆପେ ଆପେ ବାତିଲ ହୋଇଯିବ ।"

ନିଯୁକ୍ତ ହେବ ପାଇ ଦିଲ୍ଲୀପ ଭାଇର ଆନନ୍ଦ ଦେଖିବ କଅଣ । ସଙ୍ଗେ ସଙ୍ଗେ ତାଙ୍କ ବାପା ଅର୍ଥାତ ମୋ ମଉସାଙ୍କୁ ସେ ବରାଦ କଲେ—ଷାଠିଏ ଟଙ୍କା ମିଟର ଟେରିଲିନ କନାର ଦୁଇହଳ ପ୍ୟାଣ୍ଟ, ସେହି ଟେରିଲିନ କନାର ଦୁଇଟି ସାର୍ଟ, ଗୋଟିଏ କୋଟ, ଗୋଟିଏ କାଶ୍ମୀର ଚଦର; ତିନୋଟି ଗଞ୍ଜି, ଦୁଇଟି ଷ୍ଟ୍ରିଟ ଲୁଙ୍ଗି, ଦୁଇଟି ଦାମିକା ତଉଲିଆ, ପୂରା ଯୋତା ଓ ଚପଲ ମିଶି ଦୁଇହଳ, ମୋଜା ଦୁଇହଳ, ଗୋଟିଏ ମୁହଁ ଲଗା ପାଉଡ଼ର ଡ଼ବା, ଟୁଥପେଷ୍ଟ, ବ୍ରସ, ଜିଭଛେଲା, ଗୋଟେ ଶିଶି ବାସନା ତେଲ, ଦୁଇଟା ଦେହଲଗା ସାବୁନ, ଗୋଟେ ସାବୁନରଖା ଡ଼ବା, ମଧ୍ୟମ ଧରଣର ଗୋଟେ ଚମଡ଼ା ସୁଟକେଶ ବା ବାକ୍ସ ଓ ଗୋଟିଏ ଆଟାଚି ଭୁବନେଶ୍ୱର ଯିବାପାଇଁ ମୋର ନିହାତି ଦରକାର ।

ଦିଲ୍ଲୀପ ଭାଇର ଏସବୁ ବରାଦ ଦେଖି ମଉସା ମନେ ମନେ ହିସାବ କରି ଦେଖିଲେ ପ୍ରାୟ ହଜାରେ ଟଙ୍କାର ପାଖା ପାଖି ଖରଚ । ତେଣୁ ସେ ଦିଲ୍ଲୀପ ଭାଇଙ୍କୁ ଡାକି କହିଲେ—"ତୁ ବର୍ତ୍ତମାନ କାମ ଚଳିବା ଭଳି ଜିନିଷ ନେଇ ଭୁବନେଶ୍ୱର ଯା । ଚାକିରି କରି ଦରମା ପାଇବା ପରେ ଅନ୍ୟ ଜିନିଷଗୁଡ଼ିକୁ ଅସ୍ତେ ଆସ୍ତେ କିଣି ନେବୁ । ଭୁବନେଶ୍ୱରରେ ବା କେଉଁ ଜିନିଷ ଅଭାବ ଅଛି ?"

ମାତ୍ର ଦିଲ୍ଲୀପ ଭାଇଙ୍କର ଏକା ଜିଦ୍ ସେ ଏସବୁ ଜିନିଷ ନ ହେଲେ ଭୁବନେଶ୍ୱର ଆଦୌ ଯିବେ ନାହିଁ ।

ମଉସା ବାଧ ହୋଇ ମାଉସୀଙ୍କ ବେକ ହାରଟିକୁ ମହାଜନ ଘରେ ବନ୍ଧା ଦେଇ ହଜାରେ ଟଙ୍କା ଧାର ଆଣି ଦିଲ୍ଲୀପ ଭାଇର ହାତରେ ଦେଲେ । କହିଲେ—"ତୁ ତ ଆଉ ପିଲାଟୁଆ ନୁହଁ, ଦେଖି ଚାହିଁ ଖର୍ଚ୍ଚ କରିବୁ ।"

ଦିଲ୍ଲୀପ ଭାଇ ଟଙ୍କାତକ ଧରି ସଙ୍ଗେ ସଙ୍ଗେ କଟକ ବାହାରି ପଡ଼ିଲେ । ତାଙ୍କର ଜଣେ ସାଙ୍ଗଙ୍କ ଘରେ ରହି ଜିନିଷପତ୍ର ସବୁ କିଣିଲେ । ସେହି କଟକରେ ପ୍ୟାଣ୍ଟ, ସାର୍ଟ, କୋଟ, ଅଣ୍ଡରୱେୟାର ମୂଲ୍ୟବାନ ସିଲେଇ ଦୋକାନରେ ତିଆରି କରାଗଲା । ତାପରେ ଜିନିଷପତ୍ର ଧରି ସେ ଗାଁକୁ ଆସିଲେ ।

ଦିଲ୍ଲୀପ ଭାଇ ଯେଉଁଦିନ ଭୁବନେଶ୍ୱର ଚାକିରି କରିବାକୁ ବାହାରିଲେ ସେଦିନ ଗାଁରେ ସେ ଏକ ପ୍ରଦର୍ଶନୀ ଭଳି ବ୍ୟକ୍ତି ଥିଲେ ।

ଦିଲ୍ଲୀପ ଭାଇ ଦାମିକା ପ୍ୟାଣ୍ଟ, ତା ଉପରେ ଗଞ୍ଜି, ହାଓ୍ୱାଇ ସାର୍ଟ କୋଟ ପିନ୍ଧି, ଆଖିରେ କଳାଚଷମା, ପାଦରେ ପୂରା ମୋଜା ଓ ଯୋତା, ହାତରେ ଆଟାଚି ଧରି ଆଗେ ଆଗେ ଚାଲୁଥାନ୍ତି । ତାଙ୍କ ପଛେ ପଛେ ମଉସା ଆମର ସାଧାରଣ ଲୁଗା, ହାଫସାର୍ଟ, ସାଧା ଚପଲ ପିନ୍ଧି ଚମଡ଼ା ବାକ୍ସଟିକୁ କାନ୍ଧରେ ଥୋଇ ଯାଉଥାନ୍ତି । ଏ ଦୃଶ୍ୟ ଦେଖି ସମସ୍ତେ ଭାବୁଥାନ୍ତି ଦିଲ୍ଲୀପ ପାଠ ନ ପଢ଼ିଲେ କଅଣ ହେଲା, ସେକ୍ରେଟାରିଏଟ ଭଳି ଜାଗାରେ ବଡ଼ ଚାକିରିଟିଏ ପାଇଲା । ଭାଗ୍ୟରେ ଥିଲେ ଏଭଳି ସୁଯୋଗ ମିଳେ । ଆଉ କେହି କେହି ମଧ୍ୟ ବଡ଼ ପାଟିରେ କଥାବାର୍ତ୍ତା ହେଉଥିବାର ଶୁଣାଗଲା— ଆଜା ତାର ଯେତେବେଳେ ସେକ୍ରେଟାରିଏଟରେ କାମ କରୁଛନ୍ତି, ସେତେବେଳେ ଦିଲ୍ଲୀପ ଗୋଟିଏ ବଡ଼ ଚାକିରି ପାଇବା ଅସମ୍ଭବ ନୁହେଁ ।"

ଶ୍ୟାମ ମଝିରେ ପଚାରିଲେ— "ତୁ ତୋ ଦିଲ୍ଲୀପ ଭାଇ ବିଷୟରେ ଏତେ କଥା କିମିତି ଜାଣିଲୁ ? ସେ ତ ତୋଠାରୁ ବହୁତ ବଡ଼ । ଏତ ଅନେକ ଦିନ ତଳର ଘଟଣା ହୋଇଥିବ ?"

ବିଜୟ କହିଲା— "ମନ ଯା । ଅଜା ପରା ମୋତେ ସବୁକଥା ଗୋଟି ଗୋଟି କରି କହିଛନ୍ତି । ତାପରେ କଅଣ ହେଲା ଶୁଣ । ଦିଲ୍ଲୀପ ଭାଇ ବସରେ ଆସି ଅଜାଙ୍କ ଘରେ ପହଞ୍ଚିଲେ । ବସ ଷ୍ଟାଣ୍ଡରେ ମଉସା ତାଙ୍କୁ ରିକ୍ସାରେ ବସାଇ ଦେଇ ଘରକୁ ଫେରି ଆସିଥିଲେ । ଅଜା, ଆଈ ଦିଲ୍ଲୀପ ଭାଇଙ୍କୁ ଦେଖି ଭାରି ଖୁସି ହୋଇଗଲେ । ଅଜା ଦିଲ୍ଲୀପ ଭାଇଙ୍କ ବେଶ, ପୋଷାକ ଦେଖି ଆଈଙ୍କୁ କଅଣ ସବୁ ଠାରରେ କହିଲେ । ଆଈ ମୁରୁକି ହସା ଦେଇ କହିଲେ— "ତୁମର ବୁଢ଼ା ଦିନେ ମଧ୍ୟ ଏଇକଥା ଗଲାଣି ।"

ଆଈ ଦିଲ୍ଲୀପ ଭାଇଙ୍କୁ ଡାକି ଘର ଭିତରକୁ ନେଇଗଲେ । ପ୍ୟାଣ୍ଟ, ସାର୍ଟ ବଦଳାଇବାକୁ କହି ଖାଇବାକୁ ବାଢ଼ିଲେ । ଦିଲ୍ଲୀପ ଭାଇ ଖାଇ ବସି ଆଈଙ୍କ ସହିତ ସୁଖ ଦୁଃଖ ହେଉଥାନ୍ତି । ଏହି ସମୟରେ ଅଜା କହିଲେ— "କାଲି ଦଶଟାବେଳେ ମୋ ସାଙ୍ଗରେ ଯିବୁ । ସେକ୍ରେଟାରିଏଟରେ କାମରେ ଜଏନ କରିବୁ ।" ଦିଲ୍ଲୀପ ଭାଇ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ରାତି ପାହି ସକାଳ ହେଲା । ଦିଲ୍ଲୀପ ଭାଇ ନୂଆ ଚାକିରିରେ ଆଜି ଯୋଗ ଦେବେ । ତାଙ୍କ ମନରେ କେତେ ଆନନ୍ଦ, କେତେ ଭାବନା, କେତେ କଳ୍ପନା, କେତେ ଯୋଜନା । ଅଜା; ଆଈ ଶେଯରୁ ଉଠିବା ପୂର୍ବରୁ ସେ ନିତ୍ୟକର୍ମ ସାରି ଦେଇଥାନ୍ତି । ଆଈ ଉଠି ଗାଧୁଆ-ପାଧୁଆ ଶେଷକରି ଦିଲ୍ଲୀପ ଭାଇଙ୍କୁ ଜଳଖିଆ ଖାଇବାକୁ ଦେଇ ରୋଷେଇ ବାସରେ ଲାଗି ପଡ଼ିଲେ । ଅଜା

ଉଠି ଗାଧୋଇ ଆସି ଠାକୁର ପୂଜାରେ ବସିଲେ । ଏଣେ ଅଜାଙ୍କ ଠାକୁର ପୂଜା ଶେଷ ହେଲା-ବେଳକୁ ଆଈଙ୍କ ରୋଷେଇ ବାସ ଶେଷ ହୋଇଥିଲା । ଅଜା, ଦିଲ୍ଲୀପ ଭାଇ ଖାଇ ବସିଲେ ।

ଖିଆପିଆ ଶେଷ ହେଲା । ଦିଲ୍ଲୀପ ଭାଇ ଓ ଅଜା ଅଫିସ ଯିବାକୁ ପ୍ରସ୍ତୁତ ହେଲେ । ଅଜା ତାଙ୍କର ସାଧାରଣ ଧୋତି, ଗଞ୍ଜି, ଜାମା ପିନ୍ଧି, ଚପଲ ମଡ଼ାଇ, ଛତାଧରି ବାହାରିଲେ । ଦିଲ୍ଲୀପ ଭାଇ ଦାମିକା ଟେରେଲିନ ପ୍ୟାଣ୍ଟ, ଟେରେଲିନ ସାର୍ଟ, କୋର୍ଟ ପିନ୍ଧି, ଆଖିରେ କଳା-ଚଷମା, ପାଦରେ ପଲିସ୍ ଯୋତା ମୋଜା, ପିନ୍ଧି, ମୁହଁରେ ପାଉଡ଼ର, ମୁଣ୍ଡରେ ବାସନାତେଲ ଲଗାଇ, ମୁଣ୍ଡକୁଣ୍ଡାଇ ହାତରେ ସେଣ୍ଟ ଦିଆ ରୁମାଲଖଣ୍ଡି ଧରି ଯେତେବେଳେ ବାହାରିଲେ ଅଜା ଆଈ କଅଁଣ ଆଖି ଠାରଠାରି ହେଲେ କେଜାଣି, ଆଈ ହସ ସମ୍ଭାଳି ନ ପାରି ଘର ଭିତରକୁ ଚାଲିଗଲେ ।

ଅଜା ଦିଲ୍ଲୀପ ଭାଇଙ୍କୁ ସାଙ୍ଗରେ ଧରି ଗୋଟିଏ ରିକ୍ସାକରି ଯାଇ ସେକ୍ରେଟେରି-ଏଟରେ ପହଞ୍ଚିଲେ ଜଣେ ଡେପୁଟି ସେକ୍ରେଟେରୀଙ୍କ ପାଖକୁ ନେଇ ଦିଲ୍ଲୀପ ଭାଇଙ୍କୁ ପରିଚୟ କରାଇ ଦେଲେ । ତା'ପରେ ସେ ସେଠାରେ ଦିଲ୍ଲୀପ ଭାଇଙ୍କୁ ଛାଡ଼ିଦେଇ ନିଜ ବିଭାଗକୁ କାମ କରିବାକୁ ବାହାରିଲେ । ଅଜା ଯିବାବେଳେ ଡେପୁଟି ସେକ୍ରେଟେରୀ କହିଲେ—"ଏ ତେବେ ଆପଣଙ୍କ ବଡ଼ ନାତି, ? ଆଚ୍ଛା, ମୁଁ ତାର ବ୍ୟବସ୍ଥା କରୁଛି । ଆପଣ ଏଥର ଆପଣଙ୍କ କାମକୁ ଯାଆନ୍ତୁ । ଆବଶ୍ୟକ ପଡ଼ିଲେ, ମୁଁ ଆପଣଙ୍କୁ ଡକାଇ ପଠାଇବ ।"

ତାପରେ ଅଜା ଯିବା ପୂର୍ବରୁ ସେ ଓ ଅଜା କଅଁଣ ଆଖି ଠାରଠାରି ହୋଇ ହସିଲେ । ଦିଲ୍ଲୀପ ଭାଇ ଜାଣି ପାରିଲେ ନାହିଁ ।

ଅଜା ଚାଲି ଆସିବାପରେ ଡେପୁଟି ସେକ୍ରେଟେରୀ ଦିଲ୍ଲୀପ ଭାଇଙ୍କୁ ପଚାରିଲେ "ଏଠ କୁ ଯାଇଥିବା ନିଯୁକ୍ତି ପତ୍ରଟି ଆଣିଛ ?

ଦିଲ୍ଲୀପ ଭାଇ ପକେଟରୁ କାଢ଼ି ନିଯୁକ୍ତି ପତ୍ରଟି ତାଙ୍କୁ ଦେଲେ । ସେ ଦିଲ୍ଲୀପ ଭାଇଙ୍କୁ ତାଙ୍କ ସାମନାରେ ପଡ଼ିଥିବା ଚୌକିରେ ବସିବାକୁ କହି ଚପରାଶୀଙ୍କ ହାତରେ ଓ୍ୱାର୍କ ସୁପର-ଭାଇଜରଙ୍କୁ ଡକାଇ ପଠାଇଲେ । ଓ୍ୱାର୍କ ସୁପରଭାଇଜର ବାବୁ ଆସିବାରୁ ଡେପୁଟି ସେକ୍ରେଟେରୀ ଦିଲ୍ଲୀପ ଭାଇ ଆଡ଼କୁ ହାତବଢ଼ାଇ ପଚାରିଲେ – " ଏ ବାବୁଙ୍କର ନିଯୁକ୍ତିପତ୍ର ପାଇଛ ?"

ଓ୍ୱାର୍କ ସୁପରଭାଇଜର "ଆଜ୍ଞା" ବୋଲି କହି ଦିଲ୍ଲୀପ ଭାଇଙ୍କର ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦୁଇ ତିନଥର ଚାହିଁଗଲେ ।

ଡେପୁଟି ସେକ୍ରେଟେରୀ କହିଲେ – "ଏ ବାବୁଙ୍କୁ ସାଙ୍ଗରେ ନେଇ ଯାଅ । ଯେଉଁଠି ଖାଲି ଅଛି କାମ ଦିଅ "। "ଦିଲ୍ଲୀପ ଭାଇଙ୍କ ଉଦ୍ଦେଶ୍ୟରେ କହିଲେ—ସେ ତୁମ କାମର ବ୍ୟବସ୍ଥା କରିଦେବେ । ଏ ହେଲେ ତୁମ ସୁପରଭାଇଜର ।"

ଦିଲ୍ଲୀପ ଭାଇ ଡେପୁଟି ସେକ୍ରେଟେରୀଙ୍କୁ ନମସ୍କାରଟିଏ ପକାଇ ଓ୍ୱାର୍କ ସୁପରଭାଇଜରଙ୍କ ପଛେ ପଛେ ତାଙ୍କ ଅଫିସକୁ ଗଲେ । ଓ୍ୱାର୍କ ସୁପରଭାଇଜର ତାଙ୍କ ଅଫିସ ସାମନାରେ ବେଣାଚେର ପର୍ଦ୍ଦା ଉପରେ ପାଣି ଦେଉଥିବା ଜଣେ ଲୋକକୁ ଡାକି କହିଲେ – 'ମାଳୀଙ୍କୁ ବାବୁ ଟିକଏ ଡାକି ଦିଅ ତ ?"

ମାଳୀ ଆସି ପହଞ୍ଚିଲେ ! ଓ୍ୱାର୍କ ସରକାର ତାଙ୍କ କହିଲେ – "ତୁମେ ସବୁ କହୁଥିଲ ନବୀନ ଆଜ ଆସିନ, ତିନଦିନ ଛୁଟିରେ ଯାଇଛି ବୋଲି । ତାଙ୍କ ଜାଗାରେ ଏ ବାବୁଙ୍କୁ ନେଇ କାମ ଦିଅ ।"

ଓ୍ୱାର୍କ ସୁପରଭାଇଜର ଦିଲ୍ଲୀପ ଭାଇଙ୍କର ନାମ ପିତାଙ୍କ ନାମ, ଗ୍ରାମ, ଠିକଣା ସବୁ, ଲେଖି ଦିଲ୍ଲୀପ ଭାଇଙ୍କଠାରୁ ଖାତାରେ ଗୋଟିଏ ଦସ୍ତଖତ କରାଇ ନେଲେ ଏବଂ ତାଙ୍କୁ ମାଳୀଙ୍କ ଜିମାକରି ଦେଲେ ।

ମାଳୀ ପ୍ରତିବାଦ କରି କହିଲେ – "ଏ ବାବୁ କଅଣ ସେ ସବୁ କାମକୁ ପାରିବେ ଆଜ୍ଞା ?"

– "ଆ ଛାଡ଼କଥା, ପାରିବେ କି ନ ପାରିବେ, ସେଥିରେ ଆମର କଅଣ ଅଛି ? ଯାହା ଉପରୁ ହୁକୁମ, ଆମେ ତାକୁ ତାମିଲ କରିବାକୁ ବାଧ୍ୟ । କାମକୁ ଯଦି ସେ ନ ପାରିବେ, ଆମେ ଉପରକୁ ଜଣାଇବା, ସେ ସେଣିକି ଯାହା ବ୍ୟବସ୍ଥା କରିବେ"—ଓ୍ୱାର୍କ ସୁପରଭାଇଜର ଏହା କହି ତାଙ୍କ କାମରେ ଲାଗିଲେ ।

ଦିଲ୍ଲୀପଭାଇ ମାଳୀଙ୍କ ପଛେ ପଛେ ଯାଉ ଯାଉ ଦେଖିଲେ—ମାଳୀଙ୍କର ପରିଧାନ ଭିତରେ ମାଟିଆ ହାଫ ପ୍ୟାଣ୍ଟ, ଛିଣ୍ଡା ଗଞ୍ଜି । ଖରାଦିନ ହୋଇଥିଲେ ସୁଦ୍ଧା ପାଦରେ ବର୍ଷା ଦିନିଆ ଜୋତା ।

ମାଳୀ ସେକ୍ରେଟାରିଏଟ ହତା ଭିତରେ ଥିବା ଗୋଟିଏ ଷ୍ଟୋର ଘରକୁ ଦିଲ୍ଲୀପଭାଇଙ୍କୁ ନେଇଗଲେ । କହିଲେ—ଏହିଠି ତୁମର କୋଟ, ପ୍ୟାଣ୍ଟ, ସାର୍ଟ ଓହ୍ଲାଇ ପକାଅ । ଅଣ୍ଡର-

ଓ୍ୱେସ୍ବାର ତ ଭିତରେ ପିନ୍ଧିଛ । ଗାମୁଛା ଯଦି ଆଣିଛ, ବାହାର କର । ନାହିଁ ଯଦି ଗାମୁଛା ନାହିଁ, ମୋ ଗାମୁଛାଟା । ସେହି ଦୌଡ଼ରେ ପଡ଼ୁଛି, ଆଣି ଗୁଡ଼େଇ ହୋଇପଡ଼ । ମାଟି କାଦୁଅ କାମ, ଦାମି ପୋଷାକ ଏଥିରେ ଚଳିବନି ।

ବଂଶୀଭାଇ ମନେ ମନେ କହିଲେ—"ବାବା ଏ କି କାମ ?" ସେ ଭାବିଥିଲେ ଅଜା ଯେତେବେଳେ ବୁଝିଛନ୍ତି, ସେତେବେଳେ ସେ ସେକ୍ରେଟାରିଏଟରେ ଅନ୍ତ କମରେ ନିଶ୍ଚୟ ଗୋଟାଏ କିରାଣୀ କାମ ପାଇଥିବେ । ଅନ୍ୟ ପାଞ୍ଚଜଣ ବାବୁଙ୍କ ଭଳି ସେ ଚେୟାରରେ ବସି ଟେବୁଲରେ କାଗଜପତ୍ର କାମ କରିବେ । ସାଢ଼େ ଦଶଟାରେ ଅଫିସକୁ ଯାଇ ସାଢ଼େ ଚାରିଟାରେ ଘରକୁ ଫେରିବେ ।

ମାଳୀ କହିଲେ—"କଅଣ ଆଉ ଭାବୁଛ, ବାବୁ ? ସେଇଠି ବାଲଟି ଦୁଇଟା ଅଛି । ଯାଇ ପାଣି ଆଣ । ଖରାଦିନ, ଫୁଲଗଛ ଗୁଡ଼ିକ ମରିଯାଉଛି, ଗଛ ମୂଳେ ପାଣି ଦେବାକୁ ପଡ଼ିବ ।"

ବଂଶୀଭାଇର ମୁହଁ ଶୁଖିଗଲା । ପାଟିରୁ ହଠାତ୍ ବାହାରି ଆସିଲା···"କଅଣ ମୂଲିଆ କାମ କରିବି ?"

ମାଳୀ କହିଲେ—"ହଁ, ସେୟା ତ ଆଦେଶ ତମ ସାମନାରେ ହେଲା । ଯେତେଦୂର ମୁଁ ଜାଣୁଛି, ତୁମ ବେଶ ପୋଷାକ ତୁଳନାରେ ତୁମେ ବେଶୀ ପାଠ ପଢ଼ିନ । ନ ହେଲେ ଏହି ସେକ୍ରେଟାରିଏଟ ଭିତରେ ବହୁତ ବାବୁ ଅନେକ ପାଠ ପଢ଼ି ଆଇ.ଏ.ଏସ ପାଇବା ପରେ ସେକ୍ରେଟେରି ହୋଇଛନ୍ତି । କମ ପାଠ ପଢ଼ି ପିଅନ ଅଛନ୍ତି । ପାଠ ନ ପଢ଼ି ଆମ୍ଭର ପରି ମାଳୀ, ଝାଡ଼ୁଦାର, ଚୌକିଦାର ମଧ୍ୟ ହୋଇଛନ୍ତି । ଏହି ଯେଉଁ ଅଫିସ କୋଠା ସବୁ ଦେଖୁଛ, ସେଥିରେ ଯେମିତି ପାଠକୁ ସେମିତି ଚାକିରି ପାଇ ଲୋକ ଅଛନ୍ତି । ଏଠାରେ କିଏ ଇଞ୍ଜିନିଅର ଚାକିରିରେ ଅଛନ୍ତି ତ କିଏ ଡାକ୍ତର ଚାକିରି ପାଇଛନ୍ତି । କିଏ ଓକିଲ ତ କିଏ ଅଫିସର ଅଛନ୍ତି । କିରାଣୀ ତ ଏଠି ବହୁତ । ସେମାନେ ମଧ୍ୟ ବି.ଏ., ଏମ.ଏ. ପାଶ କରିଛନ୍ତି । ଯେପରି ଜଣା ପଡ଼ୁଛି, ତୁମର ପାଠପଢ଼ା କିଛି ନାହିଁ । ତା' ନ ହେଲେ ତୁମେ ଦୈନିକ ପାଞ୍ଚଟଙ୍କା ମଜୁରିରେ କାଜୁଆଲ ମୂଲିଆ କାମରେ ପଶିଥାଆନ୍ତ ।"

ବଂଶୀପଣ୍ଡାଇଙ୍କ ମୁଣ୍ଡରେ ଚଡ଼କ ପଡ଼ଲା ପରି ତାଙ୍କୁ ଲାଗିଲା । ସେ ଅନୁଭବ କଲେ ମାଳୀ ତାଙ୍କୁ ଉପଦେଶ ଦେଉ ନାହାନ୍ତି, ବରଂ କଥା ଛଳରେ ଗୋଟିଏ ଗୋଟିଏ ମୁନିଆ ଶର ତାଙ୍କ ଉପରକୁ ନିକ୍ଷେପ କରୁଛନ୍ତି । ତାଙ୍କ ଦେହ ମୁଣ୍ଡ ଜଳି ପୋଡ଼ି ଗଲାପରି ଲାଗିଲା । ହୃଦୟରେ ସେ ତୀବ୍ର ଯନ୍ତ୍ରଣା ଅନୁଭବ କଲେ । ମନେ ମନେ ଭାବିଲେ—"ସେ ଯେମିତି ପାଠ ପଢ଼ିଛନ୍ତି, ତାହା କେବଳ ମୂଲିଆ କାମ ପାଇଁ ଦରକାର ।"

ତା'ପରେ କ'ଣ ହେଲା ?" ସାଥୀ ପିଲାମାନେ ଅତି ଉତ୍କଣ୍ଠାର ସହିତ ଜାଣିବାପାଇଁ ପଚାରିଲେ ।

ବଂଶୀପଣ୍ଡାଇ ଆଉ ପ୍ୟାଣ୍ଟ, ଜାମା ନ ଖୋଲି "ଏଇଠୁ ଟିକିଏ ଆସୁଛି" ବୋଲି କହି ଚମ୍ପଟ ।

ଶଶାଙ୍କ ପଚାରିଲା—"କ'ଣ ଗାଁକୁ ଫେରି ଆସିଲେ ।"

ବିଜୟ କହିଲା—"ହଁ ଆଉ ଯିବେ କୁଆଡ଼େ ? ଗାଁରେ ତାଙ୍କୁ ମଉସା, ମାଉସୀ, ପିଲାମାନେ, ସାଇପଡ଼ିଶା ଗାଁ ଲୋକେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ବଂଶୀପଣ୍ଡାଇଙ୍କୁ ଚାକିରି ବିଷୟରେ କିଏ କେତେ ପ୍ରଶ୍ନ ପଚାରିଲେ । ମାତ୍ର ସେ କାହାକୁ କିଛି ନ କହି ଗୋଟିଏ ଘରେ ପଶି ରହିଲେ । ସେହି ଦିନଠାରୁ ତାଙ୍କର ଚାକିରି କରିବା ବ୍ୟବସାୟ କରିବା ନିଶା ମୁଣ୍ଡରୁ କୁଆଡ଼େ ଉଡ଼ିଗଲା । ସେ ପାଠପଢ଼ାରେ ଅଧିକ ମନ ଦେଲେ । ସେ ବର୍ଷ ସେ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାଶ କଲେ । ତାପରେ କଲେଜରେ ଆଇ.ଏସ.ସି. ପାଶ କରିବା ପରେ ଇଞ୍ଜିନିଅରିଂ ପଢ଼ିଲେ । ବର୍ତ୍ତମାନ ସେ ଇଞ୍ଜିନିଅର । ବର୍ଷେ ହେଲା ଚାକିରି କଲେଣି ।

"ଅଜା ଆଉ ସେଦିନ ବଂଶୀପଣ୍ଡାଇଙ୍କୁ ଖୋଜି ନାହାନ୍ତି ?" ଶ୍ୟାମ ପଚାରିଲା ।

"ଅଜାତ ବଂଶୀପଣ୍ଡାଇଙ୍କର ଫୁଙ୍କ ଛଡ଼ାଇବା ପାଇଁ ଏସବୁ ଯୋଜନା କରିଥିଲେ । ଆଉ ଖୋଜିବେ କାହିଁକି ? । ସେ ଠିକ୍ ଜାଣିଥିଲେ ବଂଶୀପଣ୍ଡାଇ ଢଙ୍ଗରଙ୍ଗ ଯାହା, ସେ ଏ କାମ ଆଦୌ କରିବେନି, ପୁଣି ଯାଇ ପାଠପଢ଼ିବେ—" ବିଜୟ କହି ନୀରବ ରହିଲା ।

ସମସ୍ତେ ଏକ ସ୍ୱରରେ କହିଲେ—"ବିଜୟ ଆଜି ତା ଅଜା ଓ ବଂଶୀପଣ୍ଡାଙ୍କ ବିଷୟରେ ବଢ଼ିଆ ମଜା ଗପଟିଏ କହିଲା ।"

ଶ୍ୟାମ ସବୁ କଥା ଶୁଣି ସେହି ଆସରରେ ଘୋଷଣା କଲା—ଭାଇମାନେ, ମୁଁ କାଲି ମୋ ଅଜାଙ୍କ ବିଷୟରେ ମଜା ଗପଟିଏ କହିବି । ତୁମେ ସମସ୍ତେ ମୁଢ଼ି ଶନାବାଦାମ ଧରି ଆସିଥିବ ।

# ଅଦାଲତରେ ଅଜାଙ୍କ ସାକ୍ଷୀ

ଗତକାଲି ଶ୍ୟାମ ତା ଅଜାଙ୍କ କଥା କହିବ ବୋଲି କହିଥିଲା ଏବଂ ସମସ୍ତଙ୍କୁ ମୁଢ଼ି ଚନାବାଦାମ ଆଣି ଆସିବାକୁ ଅନୁରୋଧ କରିଥିଲା । ମାତ୍ର ସେ ନିଜେ ହାତରୁ ପଇସା ଦେଇ ମୁଢ଼ି ଚନାବାଦାମ କିଣି ଗପ ଆସରରେ ଆସି ପହଞ୍ଚିଲା । ସେତେବେଳକୁ ପିଲାମାନେ ଆସି ବସି ଗଲେଣି ! ଫୁଟବଲ ଖେଳ ପାଇଁ ଶେଷ ଦୁଇଟି ପିରିୟଡ଼ ଥାଇ ସ୍କୁଲ ସେଦିନ ବନ୍ଦ ହୋଇ ଯାଇଥାଏ ।

ମଝିରେ କାଗଜ ପଡ଼ିଲା । ମୁଢ଼ି ଚନାବାଦାମ ରହିଲା । ଚାରିପଟେ ଯାକ ଅଜୟ, ବିଜୟ, ଶଶାଙ୍କ, ଅବନୀଶ, ଅବକାଶ, ଶଙ୍କର, ରାମ ପ୍ରଭୃତି ଶ୍ୟାମର ସାଙ୍ଗମାନେ ଘେରି ବସିଲେ । ଚନାବାଦାମ ମୁଢ଼ି ନେଇ ପାଟିରେ ପକାଇଲେ । ଶ୍ୟାମ ତା ଅଜାଙ୍କ ବିଷୟରେ ଗପ କହିବା ପୂର୍ବରୁ ସମସ୍ତଙ୍କୁ ତାଗିଦା କରିଦେଲା—"ବୁଝି ଖବରଦାର, ମୁଁ କହୁଥିବା ସମୟରେ ମତେ କେହି ମଝିରେ ପ୍ରଶ୍ନ ପଚାରିବ ନାହିଁ । ଯେଉଁଠି ଯେ ପ୍ରଶ୍ନ ପଚାରିବ, ସେଇଠି ମୋ ଗପ ବନ୍ଦ ହୋଇଯିବ ।"

ଶ୍ୟାମ ଆରମ୍ଭ କଲା—"ଅଜା ମୋର ତାଙ୍କ ଗାଁ ମଧ୍ୟଇଂରାଜୀ ବିଦ୍ୟାଳୟର ସଂସ୍କୃତ ପଣ୍ଡିତ । ମୁଣ୍ଡରେ ତାଙ୍କର ଅଧଇଞ୍ଚେ ଉଚ୍ଚର ବାଳ । ମଝିରେ ଛଅଇଞ୍ଚ ଲମ୍ବର ଚୁଟି । ଚୁଟି ଅଗରେ ରାଧାମାଧବଙ୍କ ତୁଳସୀ କେଣ୍ଡା ଓ ତଗର ଫୁଲଟିଏ ବନ୍ଧା ହୋଇଥାଏ । ସେ ମିଛ କହିବାକୁ ଓ ଅନ୍ୟାୟରେ କାହାଠାରୁ ପଇସା ଟଙ୍କା ନେବାକୁ ଭାରି ଘୃଣା କରନ୍ତି ।

ସେଦିନ ଥାଏ ଶନିବାର । ସକାଳ ସ୍କୁଲ । ସ୍କୁଲ ସାଢ଼େ ନଅଟା ବେଳେ ଛୁଟି ହୋଇଗଲା । ମୁଁ ସେହି ସ୍କୁଲରେ ଅଜାଙ୍କ ଘରେ ରହି ପଢୁଥାଏ । ସେ ବର୍ଷ ମୋର ସପ୍ତମ ଶ୍ରେଣୀ । ପ୍ରତିଦିନ ମୁଁ ଅଜାଙ୍କ ସାଙ୍ଗରେ ସ୍କୁଲକୁ ଯାଏ, ଆଉ ତାଙ୍କ ସାଙ୍ଗରେ ମଧ୍ୟ ଘରକୁ ଫେରେ ।

ସେଦିନ ଅଜା ଓ ମୁଁ ଦୁହେଁ ସ୍କୁଲରୁ ଫେରୁଥାଉ । ଗାଁ ମଝିରେ ଭାରି ପାଟିତୁଣ୍ଡ ଶୁଣାଗଲା । ଆମେ ତରବର ହୋଇ ଆସି ଘଟଣାସ୍ଥଳରେ ପହଞ୍ଚିଲୁ । ଦେଖିଲୁ—ରଘୁ ଅଜା ଆଉ ନରି ଅଜା ଦୁଇ ପଡ଼ୋଶୀଙ୍କ ଭିତରେ ଘର ମଝିରେ ପାଚେରି ପକାଇବା ନେଇ

ପାଟିତୁଣ୍ଡ ଗୁଳଛନ୍ତି । ନରଅଜା କହୁଥାନ୍ତି—"ସେଇଟା ମୋ ଜାଗା । ମୁଁ କସି୍ ନକାଲେ ସେଠି ପାଚେରି ଉଠେଇ ଦେବନ ।" ରଘୁ ଅଜା ଆଖିକୁ ନାଲ ନାଲ କରି ଅତି ଉତ୍‌ତ୍ୟକ୍ତ ହୋଇ କହୁଥାନ୍ତି—"ଏମନ୍ତ, ସେ ଜାଗା ମୋର । ମୁଁ ଅଲବତ ସେଠାରେ ପାଚେରି ଉଠାଇବି । ଦେଖିବା, କିଏ କଅଣ ମୋର କରିବ ?"

ମିସ୍ତ୍ରୀ, ମୂଲିଆ ଏହି ପାଟିତୁଣ୍ଡ ଶୁଣି କାମ ଛାଡ଼ି ତଟସ୍ଥ ହୋଇ ଠିଆ ହୋଇଥାନ୍ତି । ରଘୁ ଅଜା କହିଲେ—"କାହିଁ ରହିଁଛରେ, ତୁମ କାମ ତୁମେ ଆରମ୍ଭ କର । ଯାହା ପରେଣତ ହେବ ମୁଁ ବୁଝିବି ।"

ମିସ୍ତ୍ରୀ, ମୂଲିଆ କାମ କରିବାକୁ ବାହାରିଛନ୍ତି, ଏହି ସମୟରେ ନର ଅଜା ପାଟିକରି କହିଲେ—"ପରେଣତ ତୁ ବୁଝିବୁ ଏବେ ବୁଝ ।" ଏହା କହି ତଳେ ପଡ଼ିଥିବା ବାଉଁଶ ଖଣ୍ଡେ ଉଠାଇ ଆଣି ରଘୁ ଅଜାକୁ ପିଟିଦେଲେ । ମାତ୍ର ତାହାରଟି ରଘୁ ଅଜାଙ୍କ ମୁଣ୍ଡରେ ନ ବସି କାନ୍ଧରେ ଯୋରରେ ବସିଲା । କାନ୍ଧ ଫାଟିଯାଇ,ରକ୍ତ ବୋହିଲା । ରଘୁ ଅଜା ରାଗରେ ତଳୁ ପଥରଟିଏ ଉଠାଇ ନର ଅଜାଙ୍କ ଉପରକୁ ପକାଇଲବେଳକୁ ଲୋକେ ତାଙ୍କୁ ଧରି ନେଲେ । ନର ଅଜା ରଘୁ ଅଜାଙ୍କୁ ମାରି ପଳାଇ ଯାଉ ଯାଉ ଦୁଆର ବନ୍ଧରେ ମୁଣ୍ଡ ବାଜି, ତାଙ୍କ ମୁଣ୍ଡ ଫାଟିଗଲା ।

ବିଜୟ ପଚାରିଲା—"ସେ ଦୁହେଁ ତୋର କମିତି ଅଜା ?"

ଶ୍ୟାମ କହିଲା—ଅଜାଙ୍କ ଗାଁରେ ତାଙ୍କର ଘର । ତେଣୁ ଅଜାଙ୍କ ଗାଁ ସାରା ତ ମୋର ଅଜା, ଆଈ, ମାମୁଁ, ମାଇଁ, ମାଉସୀ; ତେଣୁ ସେ ଦୁହେଁ ମୋର ଅଜାଙ୍କ ଗ୍ରାମ ଭାଇ ହିସାବରେ ଅଜା ।

ଅଜୟ ପଚାରିଲା—"ତାପରେ କଅଣ ହେଲା ?"

ଶ୍ୟାମ କହିଲା—ନର ଅଜା ଯେମିତି ରାଗି, ସେମିତି ଗୁଣ୍ଡା, ସେପରି ମଧ୍ୟ ଧୂର୍ତ୍ତ । ସେ ବାଡ଼ିଦେଇ ବୁଲି ଯାଇ ଥାନାରେ ହାଜର । ରଘୁ ଅଜା ତାଙ୍କୁ ଠେଙ୍ଗାରେ ପିଟି ମୁଣ୍ଡ ଫଟାଇ ଦେଇଛନ୍ତି ବୋଲି ଥାନାରେ ଇତଲା ଦେଲେ । ତାପରେ ଡାକ୍ତର ସାର୍ଟିଫିକେଟ ନେବାପାଇଁ ଯାଇ ଡାକ୍ତରଖାନାରେ ଚିକିତ୍ସା ପାଇଁ ଭର୍ତ୍ତି ହୋଇଗଲେ ।

ରଘୁ ଅଜା ଘରକୁ ଡାକ୍ତର ଡାକିବା ପାଇଁ ପୁତୁରାକୁ ପଠାଇ ଥିଲେ । ସେ ଯେମିତି ଥାନାରେ ନର ଅଜାଙ୍କୁ ଦେଖିଛି, ଆଉ ଡାକ୍ତର ଡାକିବ କଅଣ, ସେଣୁ ଦୌଡ଼ିଛି ରଘୁ ଅଜାଙ୍କ

ପାଖକୁ । ରଘୁ ଅଜା ଏକଥା ଶୁଣି କ ସମ୍ଭାଳା ପଡ଼ନ୍ତି ? ସେ ସଙ୍ଗେ ସଙ୍ଗେ ପୁଲିସ୍‌କୁ ଧରି ଥାନାରେ ପହଞ୍ଚିଲେ ଏବଂ ଯାହା ସବୁ ଘଟଣା ଘଟିଛି, ତାହା ଲେଖି ଥାନାକୁ ଜଣାଇ ଦେଲେ । ଥାନାରୁ ସିଧା ସିଧା ଯାଇ ଚିକିତ୍ସା ପାଇଁ ଡାକ୍ତରଖାନାରେ ଭର୍ତ୍ତି ହେଲେ ।

ଥାନାରେ ତ ଏଣେ ନରି ଅଜାଙ୍କୁ, ସେଣେ ରଘୁ ଅଜା ଉଭୟ ଉଭୟଙ୍କ ନାଁରେ ଇତଲା ଦେଇଛନ୍ତି । ତେଣୁ ଦୁଇଜଣ କନେଷ୍ଟବଲ ଯାଇ ଡାକ୍ତରଖାନାରେ ଦୁଇ ଜଣଙ୍କୁ ଜଗି ରହିଲେ । ପୁଲିସ ଦୁହିଁଙ୍କୁ ଗିରଫକରି ତଦନ୍ତ ଆରମ୍ଭ କଲା ଓ କୋର୍ଟରେ ମକଦ୍ଦମା ରୁଜୁ କଲା ।

ଦୁଇ ଅଜାଯାକ କିଛିଦିନ ପରେ ଡାକ୍ତରଖାନାରୁ ଭଲ ହୋଇ ଆସିଲେ ସତ; ମାତ୍ର ଏଣେ ଥାନା, ସେଣେ କୋର୍ଟ ଓ ଓକିଲ ବସାକୁ ଦୌଡ଼ିବାରେ ବାର ସହିଲା ନାହିଁ ।

ନରି ଅଜା ଦେଖିଲେ, ଯଦି ଅଜାଙ୍କୁ ଆମର ସାକ୍ଷୀକରି ନ ନେଇଛନ୍ତି, ତେବେ ମକଦ୍ଦମାରେ ଜିତିବା ମୁସ୍କିଲ । ତେଣୁ ସେ ମୋ ଅଜାଙ୍କ ପାଖେ ଆସି ପହଞ୍ଚିଲେ । କହିଲେ ତୁମେ ମୋର ସାକ୍ଷୀ ହେବ ଭାଇନା !

ଅଜା ଆମର ନରି ଅଜାଙ୍କ ଦୁଷ୍ଟ ପ୍ରକୃତି ଯୋଗୁଁ ତାଙ୍କୁ ଡର କରନ୍ତି । ତେଣୁ ସେ ସିଧାସଳଖ ତାଙ୍କୁ ମନା ନ କରି, କଥାଟାକୁ ବୁଲାଇ କହିଲେ—"ମୁଁ ତ ତୋ ଭଳି ସ୍ୱାଧୀନ ଭାବରେ ବୃକ୍ଷ ବାସ କରି ଚଳୁନ ? ମୁଁ ଚାକିରି କରୁଛି । ତେଣୁ ମୋତେ ତ ସାକ୍ଷୀ ହେବାକୁ ହେଲେ ଆମ ସ୍କୁଲ ପ୍ରଧାନ ଶିକ୍ଷକ, ସ୍କୁଲ ପରିଚାଳନା ସମିତି, ଜିଲାଶିକ୍ଷା ପରିଦର୍ଶକ, ସର୍କଲ ଶିକ୍ଷା ପରିଦର୍ଶକ ଏ ସମସ୍ତଙ୍କ ଠାରୁ ଅନୁମତି ଆଣିବାକୁ ପଡ଼ିବ ।

ନରି ଅଜା କ ଛାଡ଼ିବା ବାଙ୍କ୍ରା । ସେ କହିଲେ—"ଭାଇନା ତୁମେ ସେ ବିଷୟରେ କିଛି ଚିନ୍ତା କରିବା ଉଚିତ ନୁହେଁ, ମୁଁ ଏ ସବୁ ଯୋଗାଡ଼ କରି ଦେବି ।

ନରି ଅଜା ଯିବାପରେ ପରେ ସବୁ ଜାଣିଲା ପରି ରଘୁ ଅଜା ଆସି ପହଞ୍ଚିଲେ । ଅଜାଙ୍କୁ ଆମର କହିଲେ—"ବୁଝିଲ ଭାଇନା, ତୁମେ ଚାକିରିଆ ଲୋକ । ଆଜ ଭଲ ଅଛ, ମନ୍ଦ ଅଛ; ତେଣୁ ମୋର ବିଶ୍ୱାସ, ତୁମେ ଏ ମାମଲା ଭିତରେ ସାକ୍ଷ୍ୟ ହୋଇ ଆଦୌ ପଶିବନି । ନାହିଁ ଯଦି ପଶିବ; ତେବେ ସରକାରୀ ସାକ୍ଷୀ ହୁଅ, ଯାହା ଆଖିରେ ଦେଖିଛ, ସଫା ସଫା କୋର୍ଟରେ ହାକିମ ଆଗରେ କହିଦେବ । ସେଥିକି ଯାହାର କସୁର ହେଉ । ମାତ୍ର ତୁମେ ଯଦି ନରିର ସାକ୍ଷୀ ହୋଇ ଏ ବୟସରେ ମିଛ କହିବ, ତେବେ ଭଗବାନ ତୁମର ମଙ୍ଗଳ କରିବେନି ।"

ଅଜା ଆମ ଗାଁରେ ବୟସ୍କ ଲୋକ ବୋଲି ତାଙ୍କୁ ପ୍ରାୟ ସମସ୍ତେ ଗଇନା ଡାକନ୍ତି ।

ରଘୁ ଅଜା ଓ ନର ଅଜାଙ୍କ ଭିତରେ ପୁଲିସ ମକଦ୍ଦମା ଚାଲିଥାଏ । ତା ସାଙ୍ଗକୁ ଉଭୟେ ଉଭୟଙ୍କ ନାମରେ ଦିନକୁ ଦିନ ଆଉ କେତେକ ମନଗଢ଼ା ମକଦ୍ଦମା ଦାଏର କରି ଦେଇଥାନ୍ତି । ତେଣୁ ପ୍ରତିଦିନ ରାତି ପାହିଲେ କୋର୍ଟ କଚେରୀକୁ ଯିବା ଯେପରି କି ଦୁଇ ଅଜାଙ୍କର ପେଶା ହୋଇଥାଏ ।

ସତକୁ ସତ ନର ଅଜା ତାଙ୍କ ଓକିଲଙ୍କୁ ଧରି ଆମ ଅଜାଙ୍କ ନାମରେ ସ୍କୁଲ ଇନ୍‌ସପେକ୍ଟରଙ୍କ ଜରିଆରେ ତାଙ୍କ ପକ୍ଷ ସାକ୍ଷୀ ରୂପେ ସମନ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଠିକଣାରେ ଜାରି କରିଦେଲେ । ସାକ୍ଷୀ ସମନ ଦେଖି ଅଜା ଯେମିତି ଚୁନିଆ ହୋଇଗଲେ ପ୍ରଧାନ ଶିକ୍ଷକ ସେମିତି ଆଶ୍ଚର୍ଯ୍ୟ ହୋଇଗଲେ । ଅଜା ଆମର ପ୍ରଧାନ ଶିକ୍ଷକଙ୍କୁ କହିଲେ—"ମୋତେ ଏ ବିପଦରୁ ରକ୍ଷା କରନ୍ତୁ । ବରଂ ସରକାରୀ ସାକ୍ଷୀ ହୋଇଥିଲେ ମୁଁ ଯାହା ଦେଖିଛି, କହିପାରନ୍ତି । ନଇର ସାକ୍ଷୀ ମାନେ ମୋତେ ମିଶିଲରେ ମିଛ କହିବାକୁ ପଡ଼ିବ—ଯାହାକି ମୁଁ ଏତେଟା ମିଛ ଜୀବନରେ କହି ଶିଖିନ କିମ୍ବା ମୁଁ ମିଛ କହିପାରିବ ନାହିଁ । ତାପରେ ମୁଁ ତ କୌଣସି ମାଲିମକଦ୍ଦମା କିମ୍ବା ଭଲରେ ମନ୍ଦରେ ଏ ପର୍ଯ୍ୟନ୍ତ କୋର୍ଟ କଚେରୀ ଦୁଆର ଉଠିନାହିଁ । ଆପଣ ଯଦି ବିଦ୍ୱାରନ୍ତି ଏବଂ ଉପରକୁ ଠିକ୍ ଏ ଲେଖାଲେଖି କରନ୍ତି, ମୁଁ ହୁଏତ ଏଥିରୁ ମୁକ୍ତି ପାଆନ୍ତି ।"

ପ୍ରଧାନ ଶିକ୍ଷକ କହିଲେ—"ଆପଣ ଏଥିରୁ ଯେତେ ଖସିବାକୁ ଚାହିଁଲେ ସୁଦ୍ଧା ନଇବାବୁ କଅଣ ଆପଣଙ୍କୁ ଛାଡ଼ିବେ ? ସେ ସାତପ୍ରକାର କରି କୋର୍ଟରୁ ଆମ ସ୍କୁଲ ଇନ୍‌ସପେକ୍ଟରଙ୍କ ଜରିଆରେ ସମନ ପଠାଇ ପାରିଛି, ସେ ସହଜ ଜଣେ ନୁହେଁ । ଆପଣ ଧୈର୍ଯ୍ୟ ଧରନ୍ତୁ । ଭଗବାନଙ୍କୁ ଡାକନ୍ତୁ । ସେ ଆପଣଙ୍କୁ ନିଶ୍ଚୟ ଏ ବିପଦରେ ସାହାଯ୍ୟ କରିବେ ।

ଅଜା ଦୀର୍ଘ ନିଶ୍ୱାସଟି ପକାଇ ଘରକୁ ଆସିଲେ । ଆଈଙ୍କୁ ଏକଥା କହିବାରୁ ଆଈ ଏକବାରେ ପଞ୍ଚମରେ । ସେଥିପାଇଁ ଘର ଭିତରୁ ଗର୍ଜି ଉଠି କହିଲେ—ନର ଆମର ପୋଷକ, ରଘୁ ଆମର ପୋଷକ । ସେ ତାଙ୍କର ଯାହା କରୁଛନ୍ତି କରନ୍ତୁ । ତୁମେ ସେ ମାମଲା ଭିତରେ ପଶିନ । ଏ ସରକାରୀ କଥା । ଆଜ ଭଲ ଥାଏ ମନ୍ଦ ଥାଏ ।

ତାର ତିନିଦିନ ପରେ କୋର୍ଟରେ ତାରିଖ ପଡ଼ିଲା । ଅଜା ଯାହାକୁ ସେ ସମନ ଦେଖାଇ କୋର୍ଟରେ ହାଜର ନ ହେବା ସମ୍ବନ୍ଧରେ ପରାମର୍ଶ କଲେ, ସେ କହିଲେ—"କୋର୍ଟ ଯେତେବେଳେ ତୁମ ଉପରେ ସମନ ଜାରି କରିଛି ସେତେବେଳେ ତୁମକୁ ନିଶ୍ଚୟ ହାଜର ହେବାକୁ ପଡ଼ିବ ।"

ଅଜା ତା ଶୁଣି ଆହୁରି ଭାଙ୍ଗି ପଡୁଥାନ୍ତି । ତାଙ୍କ ମୁହଁରେ ହସ ନ ଥାଏ କି ପେଟକୁ ଖାଦ୍ୟ ଯାଉ ନ ଥାଏ । ଆଈ ଖାଲି ଦିନରାତି ନରି ଅଜାଙ୍କୁ ଗାଳି ଦେବାରେ ଲାଗିଥାନ୍ତି । କହୁଥାନ୍ତି—"ଏ ଅଲଗେଇସା କଅଣ ନ କଲା । ବୁଢ଼ାଦିନେ ସୁଆଙ୍କୁ ନେଇ କୋର୍ଟ, କଚେରିରେ ଠିଆ କଲା ।" ଏ ବିପଦରୁ ଠାକୁରେ ଅଜାଙ୍କୁ ରକ୍ଷା କରନ୍ତୁ ବୋଲି ଅଖଣ୍ଡ ଘିଅଦୀପ ଜାଳି ଠାକୁରଙ୍କ ପାଖରେ ବସାଇ ଥାଆନ୍ତି ।

ମଝିରେ ଦୁଇଦିନ ବିତିଗଲାଣି । ରାତି ପାହିଲେ କୋର୍ଟରେ ସାକ୍ଷୀ ଦେବାକୁ ପଡ଼ିବ ।

ଦିନ ପ୍ରାୟ ଦୁଇଟା ହେବ । ନରି ଅଜା ଆମ ଅଜାଙ୍କ ଘରକୁ ଆସି ଖବର ଦେଲେ—"ଆଜି ଆମକୁ ସହରକୁ ଯିବାକୁ ପଡ଼ିବ ଭାଇନା । ଓକିଲ ପାଖରେ ସନ୍ଧ୍ୟାରେ ହାଜର ହେଲେ ସେ କାଲି କଅଣ କଅଣ କୋର୍ଟରେ କହିବାକୁ ପଡ଼ିବ, ବତାଇ ଦେବେ । ଆଜି ରାତିରେ ଆମେ ସେଠାରେ ରହିବା । କାଲି ସନ୍ଧ୍ୟାରେ ଫେରିବା । ତୁମର ଖାଇବା, ଶୋଇବା, ରହିବା, ଯିବା ଆସିବା, କୌଣସିଥିରେ ଅସୁବିଧା ହେବ ନାହିଁ । ମୁଁ ସବୁ ବ୍ୟବସ୍ଥା କରିଛି । ମୁଁ ରିକ୍ସାପାଇଁ ଯାଉଛି, ଅଧଘଣ୍ଟାକ ଭିତରେ ରିକ୍ସା ଧରି ପହଞ୍ଚୁଛି । ତୁମେ ପ୍ରସ୍ତୁତ ହୋଇଥାଅ । ଯିବା ।"

ଆଈ ଘର ଭିତରୁ ଝଡ଼ ଭଳି ଆସିଲେ । ମାତ୍ର ନରି ଅଜାଙ୍କୁ ଦେଖି ତାଙ୍କ ରାଗ କୁଆଡ଼େ ଉଭେଇ ଗଲା । ତା ଜାଗାରେ ତୁଣ୍ଡରୁ ଆବେଦନ, ନିବେଦନ, କାଲୁଭାଳି କଥା ବାହାରିଲା । ସେ କହିଲେ—ନରି ! ତୁ କାହିଁକି ଏ ବୁଢ଼ାଦିନେ ତାଙ୍କୁ ଟାଣୁଛୁ । ତୁ ତ ତାଙ୍କ କଥା ଜାଣୁ ! ସେ ଜୀବନରେ କେବେ କୋର୍ଟ କଚେରି ଦୁଆର ମୁହଁ ଦେଖି ନାହାନ୍ତି । ତୁ ତାଙ୍କୁ ସେଥିରୁ ନିସ୍ତାର ଦେ ।"

ନରି ଅଜା କହିଲେ—ଭାଇନାଙ୍କୁ ନିସ୍ତାର ଦେଲେ ମକଦ୍ଦମା ଚାଲିପାରିବ ଭାଉଜ ? ଦେଖୁଛ ତ ରଘୁ ଭାଇନାଙ୍କ ଜିଦ୍ । ମୋ ଜାଗା ଉପରେ ସେ ପାଚେରି କରିବେ । ପୁଣି ଅଲବତ କରିବେ, ନିଶ୍ଚୟ କରିବେ, କରନ୍ତୁ । ଗଣ୍ଡା ଗଣ୍ଡାତ ମକଦ୍ଦମା ଚାଲିଛି । ଆଗ ଫଇସଲା ହେଉ ! ମୁଁ ରିକ୍ସା ଡାକିବାକୁ ଯାଉଛି ଭାଉଜ । ବେଳ ହୋଇ ଯାଉଛି । ଆମକୁ ସନ୍ଧ୍ୟା ପୂର୍ବରୁ ଓକିଲ ବସାରେ ପହଞ୍ଚିବାକୁ ପଡ଼ିବ ।" ସେ ତରତର ହୋଇ ଚାଲିଗଲେ ।

ଅଜା ମାରବାରେ ଘର ଭିତରେ ମୁଣ୍ଡରେ ହାତ ଦେଇ ବସିଥାନ୍ତି । ଆଈ ଆସି ତାଙ୍କ ପାଖରେ ଠିଆ ହୋଇ କହିଲେ—"କାହିଁକି ଏତେ ଚିନ୍ତା କରୁଛ ? ଆମର ଭଗବାନ ଅଛନ୍ତି । ମୋର ଯେମିତି ମନ କହୁଛି, ତୁମର କିଛି ଅସୁବିଧା ହେବ ନାହିଁ ।"

ଏହି ସମୟରେ ନର ଅଜା ଗୋଟିଏ ରିକ୍ସା ଧରି ଆସି ଦୁଆର ମୁହଁରେ ପହଞ୍ଚିଲେ । ଅଜା ମାରବଡ଼େ ଲୁଗାପଟା ପିନ୍ଧି ବାହାରିଲେ । ବାହାରିଲା ବେଳକୁ ଆଈ ନର ଅଜା ଓ ଆମ ଅଜାଙ୍କୁ ଶୁଣାଇ ଶୁଣାଇ କହିଲେ—ତୁମ ସାଙ୍ଗରେ ଶ୍ୟାମ ଯାଉ । ତୁମେ ଯେପରି ବେଖିଆଲିଆ ଲୋକ ନା, କେଉଁଠି କଅଣ ଭୁଲି ଆସିବ, କେଉଁଠି କଅଣ କହିବ, କେଉଁଠି କଅଣ କରି ପକାଇବ ।"

ନର ଅଜା ସଙ୍ଗେ ସଙ୍ଗେ କହିଲେ—ଶ୍ୟାମ ଚାଲୁ । ଶ୍ୟାମ ଗଲେ ବରଂ ଭଲ ହେବ । ସେ ଭଉଣୀଙ୍କ ପାଖେ ପାଖେ ରହିବ । ମୁଁ ତ କେତେବେଳେ କୁଆଡ଼େ ଯିବି ଠିକଣା ନାହିଁ ।"

ମୁଁ ଓ ଅଜା ଯାଇ ରିକ୍ସାରେ ବସିଲୁ । ଆଈ ଆଖିରୁ ଲୁହ ପୋଛି ପୋଛି କହିଲେ—ଭଉଣୀଙ୍କର ଯେପରି କିଛି ଅସୁବିଧା ନ ହୁଏ, ନର ଦେଖିବ ।"

ନର ଅଜା ସାଇକେଲରେ ଆଗକୁ ଯାଉ ଯାଉ କହିଲେ—କିଛି ତାଙ୍କର ଅସୁବିଧା ହେବନି । ପରେ ଭଉଣୀ ଫେରିଲେ ଶୁଣିବ ନା ।

ମୁଁ ଲକ୍ଷ୍ୟ କରିଥିଲି ଗାଁ ମୁଣ୍ଡ ବାଙ୍କ ପର୍ଯ୍ୟନ୍ତ ଆଈ ଦୁଆର ମୁହଁରେ ଠିଆ ହୋଇ ରିକ୍ସାକୁ ଚାହିଁ ରହିଥିଲେ ।

ସନ୍ଧ୍ୟାରେ ଆମେ ଯାଇ ଉତ୍କଳ ବସାରେ ପହଞ୍ଚିଲୁ । ତା ପୂର୍ବରୁ ନରି ଅଜା ଆମକୁ ଗୋଟିଏ ଜଳଖିଆ ଦୋକାନକୁ ନେଇଗଲେ । ଆମ ଆଗରେ ରସଗୋଲା, ଛେନାପୋଡ଼, ସିଂଗଡ଼ା ଗୋଟିଏ ଗୋଟିଏ ପ୍ଲେଟରେ ଭର୍ତ୍ତିକରି ରଖିଦେଲେ । ନିଜେ ମଧ୍ୟ ଗୋଟିଏ ପ୍ଲେଟ ଧରି ବସି ପଡ଼ିଲେ । କହିଲେ—"ଏଇଠି ଟିକିଏ ଲୁ ଜଳଖିଆ ଖାଇ ଉତ୍କଳ ବସାକୁ ଯିବା ।"

ସେ ରସଗୋଲା, ସିଂଗଡ଼ା, ଛେନାପୋଡ଼ ଖଣ୍ଡିକୁ ଦେଖି ମୋର କି ଆନନ୍ଦ ! ଏଣିକି ତେଣିକି ନ ଚାହିଁ ଗୋଟିକ ପରେ ଗୋଟିଏ ଶେଷ କରିବାରେ ଲାଗିଗଲି । ମାତ୍ର ଅଜା ମୋ ପ୍ଲେଟକୁ ସବୁ ବଢ଼ାଇ ଦେଇ ପାଣି ଗ୍ଲାସଟି ପିଇ ଚୁପ ହୋଇ ବସିଲେ । ସେ ଖାଲି ଟିକିଏ ଲୁ ଖାଇଲେ ।

ଓକିଲଙ୍କ ଘରେ ପହଞ୍ଚିଲା ବେଳକୁ ମିଶିଲ ଆରମ୍ଭ ହୋଇଗଲାଣି । ତା' ପରଦିନ ଓକିଲଙ୍କର ପ୍ରାୟ ଚାରି ପାଞ୍ଚଟି ମକଦ୍ଦମା ଥାଏ । ଆମର ଥାଏ ପ୍ରଥମ ମକଦ୍ଦମା । ଅଜା ଆମର ପ୍ରଥମ ସାକ୍ଷୀ । ନସ୍ୟ ଅଜା ଓକିଲବାବୁଙ୍କ ପାଖକୁ ଯାଇ ତାଙ୍କ କାନରେ କଅଣ ଫୁସୁଫୁସୁ କରି କହିଲେ । ଓକିଲବାବୁ ଆମ ଅଜାଙ୍କୁ ପାଖକୁ ଡାକିଲେ । ଅଜାଙ୍କର ସାକ୍ଷୀ ଦେବା ସକାଶେ ତାଲିମ ଆରମ୍ଭ ହେଲା ।

ଓକିଲବାବୁ ଅଜାଙ୍କୁ କହିଲେ—"ଅପର ପକ୍ଷ ଓକିଲ ଯେତେବେଳେ ଆପଣଙ୍କୁ ପଚାରିବେ—ଆପଣ ସେତେବେଳେ କଅଣ କରୁଥିଲେ ? ଆପଣ କହିବେ—ମୁଁ ସ୍କୁଲରୁ ଫେରୁଥିଲି । ପାଟିତୁଣ୍ଡ ଶୁଣି ନରି ଘରକୁ ଗଲି । ଦେଖିଲି ରଘୁ ନରି ଆଡ଼କୁ ଘୁଞ୍ଚି ଜାଗା ମଡ଼ାଇ ଜବରଦସ୍ତି ପାଚେରୀ ଦେବାକୁ ବସିଛି । ନରି କେବଳ ଏହାର ପ୍ରତିବାଦ କରି କହୁଛି । ତୁମେ ବଡ଼ଭାଇ ହୋଇ ଏଭଳି ଅନ୍ୟାୟ କାମ କିପରି କରୁଛ ? ପାଞ୍ଚଜଣଙ୍କୁ ଗାଁରୁ ଡାକ । ସେମାନେ ଜାଗା ଦେଖନ୍ତୁ, ମାପନ୍ତୁ । ସେମାନେ ଯେଉଁଠି ପାଚେରି ଦବାକୁ କହିବେ, ତୁମେ ସେହିଠି ପାଚେରି ଦବ । ମୁଁ ସେଥିରେ ଆଦୌ ପ୍ରତିବାଦ କରିବି ନାହିଁ । ରଘୁ କହୁଥିଲା – ମୁଁ କାହାର କଥା ଶୁଣିବି ନାହିଁ । ମୁଁ ଅଲବତ ଏ ଜାଗାରେ ପାଚେରି କରିବି । ରଘୁର ମିସ୍ତ୍ରୀ ମୂଲିଆ କାମ କରିବାକୁ ଲାଗିଥାନ୍ତି । ନରି ଯେତେବେଳେ ତାଙ୍କ ମିସ୍ତ୍ରୀଙ୍କୁ ପାଚେରି ଗଢ଼ନା ବୋଲି ମନା କଲେ, ସେତେବେଳେ ରଘୁ ରାଗିଯାଇ ନରିର ମୁଣ୍ଡକୁ ପାଖରେ ପଡ଼ିଥିବା ଗୋଟିଏ ବାଉଁଶରେ ପିଟିଦେଲା । ନରି ବେହୋସ ହୋଇ ତଳେ ପଡ଼ିଗଲା । ତାପରେ ତାଙ୍କ ପକ୍ଷ ଓକିଲ ପଚାରିବେ—ନରି ତ ବେହୋସ ହୋଇ ଯାଇଥିଲା, ଥାନା ପର୍ଯ୍ୟନ୍ତ ଗଲା କିପରି ? ଆପଣ କହିବେ—ମୁଁ, ଓ ନରି ସ୍ତ୍ରୀ ମିଶି ନରିକୁ ଚେତା କଲୁ । ହୋସ ଫେରିବା ପରେ ସେ ଥାନାକୁ ଇତଲା ଦେବାକୁ ଗଲା । ତାପରେ ତାଙ୍କ ପକ୍ଷ ଓକିଲ ହୁଏତ ପଚାରିବେ – ନରିକୁ ଚୋଟ କରିବା ସମୟରେ ଆଉ କିଏ ସବୁ ସେଠାରେ ଥିଲେ ? ଆପଣ କହିବେ—ସେତେବେଳେ ତ ହାଉଜିଆ ବେଳ । ମୋର ଏତେ ଆଉ ଖିଆଲ ନାହିଁ । ମୋର ଯେତେଦୂର ମନେ ପଡ଼ୁଛି—ପାଟି ଶୁଣି ବାହାରର କେତେକ ଲୋକ ଆସି ଜମା ହୋଇଥିଲେ – ଯେଉଁ ମାନଙ୍କୁ କି ମୁଁ ଚିହ୍ନେ ନାହିଁ । ତାପରେ ଅପରପକ୍ଷ ଓକିଲ ପଚାରିବେ – ଆଚ୍ଛା ରଘୁଙ୍କ କାନ୍ଧରେ ମାଡ଼ କିପରି ବସିଲା ? ଆପଣ କହିବେ—ଯେତେଦୂର ଅନୁମାନ ସେ ନରିକୁ ବାଡ଼େଇ ଦେଇ ଦୌଡ଼ି ଯାଉ ଯାଉଁ କେଉଁଠି ପଡ଼ି ସେଭଳି ହୋଇଛି ।"

ଅଜା କହିଲେ—ବାବୁ, ମୁଁ ତ ଏତେ ମିଛ କଥା ମନେ ରଖି କହି ପାରିବି ନାହିଁ ।

ଓକିଲବାବୁ ଟିକିଏ ବିରକ୍ତି ମିଶା ସ୍ୱରରେ କହିଲେ—ଏ ସବୁ କଥା ନ କହିଲେ ମକଦ୍ଦମା ହୁଏତ ଭଣ୍ଡୁର ହୋଇଯିବ । ଏହି ଘଟଣା ଉପରେ ନରି ବାବୁଙ୍କୁ ଜେଲ, ଜୋରିମାନା ପର୍ଯ୍ୟନ୍ତ ହୋଇଯାଇ ପାରେ ।

ନରି ଅଜା କହିଲେ—"ଭଇନା, କୁମ୍ଭୀର ନେଇ ମଞ୍ଚି ନଈରେ କଲଣି । ତୁମେ ଏତେବେଳେ ଆଉ ସତକୁ ଧରି ବସିଲେ ଚଳିବ ? ଓକିଲବାବୁ ଯାହା ସବୁ କହୁଛନ୍ତି, ଠିକ୍ ଠିକ୍ ମନେ ରଖ, କୋର୍ଟରେ କାଲି ସେପରି ସେହି କଥା ସବୁ କହିବ ।

ଅଜା ଆଉ କିଛି କହିଲେ ନାହିଁ । ଓକିଲବାବୁ ପୁଣି ପଚାରିଲେ –"ମୁଁ ଯାହା କହିଲି ସବୁ ମନେ ରଖିଲେ ତ ?"

ଅଜା ଅତି ବିମର୍ଷ କଣ୍ଠରେ କହିଲେ—"ଆଜ୍ଞା ।"

ଓକିଲବାବୁ ଆଉ ଥରେ ଅଜାଙ୍କୁ ତାଲିମ କଲେ । ମାତ୍ର ଓକିଲବାବୁ ପୂର୍ବପରି ଗଡଗଡ କରି ସବୁ କହି ଯାଉଥାନ୍ତି । ଅଜା ନୀରବରେ ବସିଥାନ୍ତି, ସେ ସେକଥା ଶୁଣୁଥାନ୍ତି କି ନାହିଁ, ସେ ଜାଣନ୍ତି ।

ଓକିଲବାବୁଙ୍କ ଘର କାମ ତୁଟାଇ ଆମେ ହୋଟେଲକୁ ଖାଇବାକୁ ଗଲୁ । ନରି ଅଜା ଓ ମୁଁ ଦୁହେଁ ପେଟେ ପେଟେ ମାଛ ଝୋଳ, ଭାତ, ଡାଲି, ତରକାରୀ ଖାଇଲୁ । ଅଜା ଖାଇଲେନି । ଆମେ ଯେତେ କହିଲୁ, ସେ କହିଲେ—ମୋତେ ଭୋକ ନାହିଁ । ରାତିରେ ସେହି ହୋଟେଲରେ ରହିଲୁ ।

ତହିଁ ପରଦିନ ସାଢ଼େ ଦଶଟା । ଆମେ ହୋଟେଲରେ ନିତ୍ୟକର୍ମ ସାରି, ଖିଆପିଆ ବଢ଼ାଇ କୋର୍ଟକୁ ବାହାରିଲୁ । ମାତ୍ର ଅଜା ସକାଳେ ଯାହା ଜଳଖିଆ ଟିକିଏ ଖାଇଥିଲେ ସେତିକି; ଆଉ ଭାତ ଖାଇଲେ ନାହିଁ ।

କୋର୍ଟ ସମୟ ହେଲା । ବିଚାରପତି ଆସନରେ ଆସି ବସିଲେ । ପେସ୍କାର, ଓକିଲ, ମୋହରିର, ବାଦୀ, ପ୍ରତିବାଦୀ ସେ ଯାହାର ଆସନ ଦଖଲ କଲେ । କଚେରୀ ସରଗରମ ହୋଇ ଉଠିଲା । ବିଚାର ଆରମ୍ଭ ହେଲା । ପ୍ରଥମେ ମକଦ୍ଦମା ପଡ଼ିଲା ନରି ଅଜାଙ୍କର ମୋ ଅଜା ପୁଣି ପ୍ରଥମ ସାକ୍ଷୀ, ତାଙ୍କୁ ଜେରା କରିବେ ରଘୁ ଅଜାଙ୍କ ଓକିଲ ।

କୋର୍ଟର ହାଜରାପକା ପିଅନ ଅଜାଙ୍କ ନାଁ ଧରି ତିନିଥର "ହାଜର ହେ" "ହାଜର ହେ" "ହାଜର ହେ" ବୋଲି ଡାକ ପକାଇଲା । ଲସରପସର ହୋଇ କୋର୍ଟ ଭିତରେ ଥିବା ସାକ୍ଷୀ ଅଡା ଭିତରେ ଆସି ଠିଆ ହେଲେ, ସାକ୍ଷୀ ଦେବା ପୂର୍ବରୁ ଅଜାଙ୍କୁ ଧର୍ମ ପୁସ୍ତକ ଛୁଇଁ ତିନିଥର ଶପଥ କରିବାକୁ ପଡ଼ିଲା—"ମୁଁ ଯାହା କହିବି, ସତ କହିବି" "ମୁଁ ଯାହା କହିବି ସତ କହିବି," "ମୁଁ ଯାହା କହିବି, ସତ କହିବି ।"

ନରି ଅଜା ଓ ମୁଁ ଦର୍ଶକଙ୍କ ପାଇଁ ପଡ଼ିଥିବା ଆଗ ବେଞ୍ଚରେ ବସିଥାଉ । ରଘୁ ଅଜା ଗୋଟିଏ କୋଣରେ ମୁହଁ ଶୁଖାଇ ମଝିରେ ମଝିରେ ଦୀର୍ଘ ନିଶ୍ୱାସ ପକାଇ କହୁଥାନ୍ତି "ଭାଇନା ଶେଷରେ ବୁଢ଼ାଦିନେ ଏଇଆ କଲ । ହଉ ମୋର ଭଗବାନ ଅଛନ୍ତି ।"

ରଘୁ ଅଜାଙ୍କ ଓକିଲ ମୋ ଅଜାଙ୍କର ନାଁ, ଗାଁ, ତାଙ୍କ ବାପାଙ୍କ ନାଁ ପ୍ରଥମେ ସବୁ ପଚାରି ଦେଇଗଲେ । ଅଜାଙ୍କର ଛାତି ଏଣେ ପଡ଼ୁଥାଏ, ଉଠୁଥାଏ, ମାତ୍ର ଗୋଟି ଗୋଟି କରି ଉତ୍ତର ଦେଲେ । ସେ ପୁଣି ପଚାରିଲେ—ଆପଣ କଅଣ କାମ କରନ୍ତି ? ଅଜା କହିଲେ—"ମୁଁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ସଂସ୍କୃତ ଶିକ୍ଷକ ଅଛି ।

ରଘୁ ଅଜାଙ୍କ ଓକିଲ ଅଜାଙ୍କୁ ଆମର ଟିକିଏ ଚିଡ଼େଇ ଦେବାକୁ କହିଲେ' ଆପଣେ ଏଣେ ସଂସ୍କୃତ ଶିକ୍ଷକ କାମ କରନ୍ତି, ସେଣେ ଟାଉଟରି କରି ପର ଘରେ ମାଲି ମକଦ୍ଦମା ଚଳାନ୍ତି, ମିଛ ସାକ୍ଷୀ ଦିଅନ୍ତି ବୋଲି ଲୋକେ କହୁଛନ୍ତି ।

ଅଜା ଆମର ରଘୁ ଅଜାଙ୍କ ଓକିଲଙ୍କର ଚାଲାକ ପଣିଆ ବୁଝିପାରିଲେ ନାହିଁ । ହଠାତ୍ ରାଗି ଉଠିଲେ । କହିଲେ—"ମିଛ । ଯାହା ଶୁଣୁଛ ସବୁ ମିଛ । ମୁଁ ଟାଉଟରି କରୁଛି, ମିଛ ସାକ୍ଷୀ ଦେଉଛି ବୋଲି ଆପଣ ଆଗେ ଯେ କହୁଛନ୍ତି, ସେ ପ୍ରମାଣ ଦେବେ ? ମୁଁ ଶିକ୍ଷକ, ପିଲାଙ୍କର ଜୀବନ ଗଢ଼ୁଛି । ମୁଁ ଜୀବନରେ କେବେ ମିଛ କହି ଶିଖିନି କି ଟାଉଟରି କରି ଜାଣେନା କିମ୍ବା ଭବିଷ୍ୟତରେ ମଧ୍ୟ ଏ ଦୁଇଟି ଜିନିଷ କରିବି ନାହିଁ ।

ନରି ଅଜାଙ୍କ ଓକିଲ କଅଣ କହିବାକୁ ଯାଉଥିଲେ, ମାତ୍ର ରଘୁ ଅଜାଙ୍କ ଓକିଲ "ସେ ଜେରା କରୁଥିବା ସମୟରେ ମଝିରେ କୌଣସି ବାଧା ନ ଦେବାକୁ ତାଙ୍କୁ

ଅନୁରୋଧ କଲେ । ହାକିମ ମଧ୍ୟ ନର ଅଜାଙ୍କ ଓକିଲଙ୍କୁ ଜେରା କରିବା ସମୟରେ କୌଣସି ବାଧା ସୃଷ୍ଟି ନ କରିବାକୁ କହିଲେ ।

ରଘୁ ଅଜାଙ୍କ ଓକିଲ ପୁଣି ଅଜାଙ୍କୁ ଜେରାକରି ପଚାରିଲେ—"ଆପଣ ତ କେବେ ମିଛ କହନ୍ତି ନାହିଁ, ଠାଉଠରା କରନ୍ତି ନାହିଁ ବୋଲି କହୁଛନ୍ତି । ଆପଣ ସଂସ୍କୃତ ପଣ୍ଡିତ, ଧର୍ମରେ ଆପଣଙ୍କର ଅଟଳ ବିଶ୍ୱାସ, ଏଣେ ଧର୍ମପୁସ୍ତକ ଛୁଇଁ ଶପଥ କରିଛନ୍ତି ଯେ – "ଯାହା କହିବେ ସତ କହିବେ ", ତେବେ ସେଦିନ କଅଣ ସବୁ ଘଟଣା ଘଟିଥିଲା, ଆପଣ ସେଠାରେ କେତେବେଳେ ଯାଇ ପହଞ୍ଚିଲେ, କଅଣ ସବୁ ଦେଖିଲେ, ଠିକଏ କହନ୍ତୁ ।"

ଅଜା କହିଲେ—"ତେବେ ଶୁଣନ୍ତୁ । ମୁଁ ସ୍କୁଲରୁ ଫେରିଲାବେଳକୁ ପ୍ରବଳ ପାଟି ତୁଣ୍ଡ ହେଉଥିବାର ଶୁଣିବାକୁ ପାଇଲି । ପାଖକୁ ଆସି ଦେଖିଲି ନର, ରଘୁ ଦୁହିଁଙ୍କ ଭିତରେ ଘରେ ପାଚେରୀ ଟେକାଇବା ନେଇ ପାଟିତୁଣ୍ଡ ଚାଲିଛି ।

ରଘୁ ଅଜାଙ୍କ ଓକିଲ ପଚାରିଲେ—ସେ ଦୁହେଁ କଅଣ ସବୁ କହୁଥାନ୍ତି ?

ଅଜା କହିଲେ—ନର କହୁଥାଏ, ଏ ମୋ ଜାଗା । ମୁଁ ଏଠାରେ କଦାପି ପାଚେରୀ ଉଠାଇ ଦେବିନି । ରଘୁ କହୁଥାଏ—ଏ ମୋ ଜାଗା । ମୁଁ ଅଲବତ ଏଠାରେ ପାଚେରୀ କରିବି ।"

ତହୁଁଉତ୍ତାରେ, ନର ଅଜା, ତାଙ୍କ ଓକିଲ, ରଘୁ ଅଜା ସମସ୍ତେ ଆମ ଅଜାଙ୍କ ମୁହଁକୁ ଚାହିଁଥାନ୍ତି ।

ରଘୁ ଅଜାଙ୍କ ଓକିଲ ପଚାରିଲେ—"ତାପରେ କଅଣ ହେଲା ?

ସେପରି ଜଣା ପଡୁଥିଲା—ଅଜା ସେତେବେଳକୁ ଆଉ ନିଜ ଆୟତ୍ତରେ ନ ଥିଲେ । ସେ କହୁ କହୁ କହି ପକାଇଲେ—"ଏହି ସମୟରେ ନର ହଠାତ୍ ରାଗିଗଲା । ତଳେ ପଡ଼ିଥିବା ବାଉଁସ ଖଣ୍ଡେ ଉଠାଇ ଆଣି ରଘୁକୁ ପିଟି ଦେଲେ ।"

ରଘୁ ଅଜାଙ୍କ ଓକିଲ ଆଉ ସମୟ ନ ଦେଇ ପଚାରିଲେ – "ନର ମୁଣ୍ଡ ଫାଟିଲା କିମିତି ?"

ଅଜାଙ୍କ ପାଟିରୁ ବାହାରି ଆସିଲା—"ନରି ରଘୁକୁ ମାରି ଦୌଡ଼ ପଳାଇ ଯାଉ ଯାଉ ଯାଉ ଦୁଆରବନ୍ଧ ବାଜି ମୁଣ୍ଡ ଫାଟିଗଲା ।"

ବଡ଼ାରପଟ ସେତେବେଳକୁ କ'ଅଣ ସବୁ ଲେଖି ଚାଲିଥାନ୍ତି ।

ରଘୁ ଅଜାଙ୍କ ଓକିଲ କହିଲେ—"ବେଶ୍, ବନ୍ଦ କର ।"

ଅଜା ଆମର ସାକ୍ଷୀ ଅଡ଼ା ଭିତରୁ ବାହାରି ଆସୁ ଆସୁ ତାଙ୍କ ଦୃଷ୍ଟିରେ ନରି ଅଜା ଓ ତାଙ୍କ ଓକିଲ ପଡ଼ିଲେ ତାଙ୍କର ପୂର୍ବ ରାତି କଥା ବୋଧହୁଏ, ମନେ ପଡ଼ିଲା । ସେ ପୁଣି ସାକ୍ଷୀ ଅଡ଼ା ଭିତରକୁ ପଶି ଆସି କ'ଅଣ ସବୁ କହିବାକୁ ଆରମ୍ଭ କରୁଥିଲେ । ମାତ୍ର ରଘୁ ଅଜାଙ୍କ ଓକିଲ ତାଙ୍କୁ ଆଉ କହିବାକୁ ନ ଦେଇ କହିଲେ—"ଆପଣଙ୍କର ଆଉ ଆବଶ୍ୟକ ନାହିଁ । ଆପଣ ଯାଆନ୍ତୁ ।" ବଡ଼ରପଟ ମଧ୍ୟ ଅଜାଙ୍କୁ ଯିବାପାଇଁ କହିଲେ ।

ରଘୁ ଅଜାଙ୍କ ଆନନ୍ଦ କହିଲେ ନ ସରେ ।

"ଆଉ ନରି ଅଜା ?" ଆସରର ପିଲାମାନେ ଏକାବେଳକେ ଏହି ପ୍ରଶ୍ନଟି ପଚାରି ଶ୍ୟାମ ମୁହଁକୁ ଚାହିଁ ରହିଲେ ।

ନରି ଅଜାଙ୍କ ଓକିଲ ମୁଣ୍ଡରେ ହାତ ଦେଇ ଚୌକିରେ ବସିଥାନ୍ତି, ନରି ଅଜା ବେଞ୍ଚ ପାଖରେ ଠିଆ ହୋଇ କହୁଥାନ୍ତି—"ଏ ତୁମେ କ'ଅଣ କଲ ଭାଇନା ?" ତାଙ୍କ ମୁଣ୍ଡ ଘୂରିଗଲା କି ନା କ'ଅଣ । ସେ ବେଞ୍ଚରେ ମୁଣ୍ଡ ଦେଇ ତଳେ ବସି ପଡ଼ିଲେ ।

ଅଜା କୋର୍ଟ ଦୁଆର ମୁହଁକୁ ଆସିବାମାତ୍ରେ ମୁଁ ବାହାରକୁ ଆସି କହିଲି—"ଏ ତୁମେ କ'ଅଣ କଲ ଅଜା । ନରି ଅଜାଙ୍କ ପକ୍ଷ ସାକ୍ଷୀ ହୋଇ ତାଙ୍କର ବିରୁଦ୍ଧରେ ସବୁ କହିଗଲ ? ମୁଁ ସେଦିନ ଘଟଣା କଣ୍ଟୁ ଦେଖିନ ବୋଲି କହିଲେ କହିଲନି ?"

ଅଜାଙ୍କ ଦେହରୁ ସେତେବେଳେ ଗମ ଗମ ହୋଇ ଝାଳ ବୋହି ଯାଉଥାଏ । ସେ ଥରି ଥରି ମୋତେ କହିଲେ—ତୁ ଶୀଘ୍ର ଖଣ୍ଡେ ଟକ୍‌ସୀ ଡାକି ଆଣେ । ସିଧା ରେଳ ଷ୍ଟେସନକୁ ଯାଇ ରେଳରେ ବସି ତୁମ ଗାଁକୁ ପଳାଇବା । ନରି ଯେଉଁଭଳି ଗୁଣ୍ଡା ପ୍ରକୃତିର ଲୋକ, ସେ ମୋତେ ଗାଁରେ ଆଉ ରଖେଇ ଦେବନି, ମୁଁ ତ ମିଛ କହି ଜାଣେନା କରିବି କ'ଅଣ ?

ମୁଁ ପଚ୍ଚରିଲି ଆଉ ?

"ତୁ ପରେ ଆସି ତାକୁ ନେଇ ଯିବୁ" କହି ଅଜା ସିଧା ସିଧା ଆସି ଗୋଟିଏ ଖାଲି ରିକ୍ସାରେ ବସି ଷ୍ଟେସନକୁ ଯିବାକୁ କହିଲେ । ମୁଁ ତାଙ୍କ ପାଖରେ ରିକ୍ସାରେ ଆସି ବସିଲି । ଦୁହେଁ ରେଳ ଷ୍ଟେସନକୁ ଗ୍ଲଲୁ ।

ଅନ୍ୟ ପିଲାମାନେ ପଚାରିଲେ—' ନର ଅଜାଙ୍କ ଅବସ୍ଥା କଅଣ ହେଲା ?

ଶ୍ୟାମ କହିଲା—ଯେ ଅନ୍ୟାୟ କରିବ, ସେ ନିଶ୍ଚୟ ଦଣ୍ଡ ପାଇବ । ଅଜାଙ୍କ ସାକ୍ଷୀ ଉପରେ ତାଙ୍କୁ ଜେଲ୍, ଜୋରିମାନା ହୋଇଗଲା । ନର ଅଜା ଜେଲ୍ ଭିତରେ ଥିବାବେଳେ କିଛି ଦିନ ପରେ ସେହି ଚିନ୍ତାରେ ସେ ସେଇଠି ମରିଗଲେ । ଏଣେ ରଘୁ ଅଜା ଦିନେ ସକାଳୁ ଶେଯରୁ ନ ଉଠିବାରୁ ତାଙ୍କ ପିଲାମାନେ ଯାଇ ଦେଖନ୍ତି ତ ରାତିରୁ ତାଙ୍କ ପ୍ରାଣବାୟୁ ଉଡ଼ି ଯାଇଛି । ଜାଗା ପାଇଁ ଯେଉଁମାନେ ଦିନେ କଳିକଜିଆ, ମାଡ଼ ମରାମରି ଏପରିକି ମାଲିମକଦମା କରୁଥିଲେ, ସେମାନେ ସବୁ କୁଆଡେ ଗଲେଣି । ମାତ୍ର ସେ ଜାଗା ସେମିତି ପଡ଼ିରହିଛି । ଆମ ଅଜା ଏପର୍ଯ୍ୟନ୍ତ ବଞ୍ଚିଛନ୍ତି । ମାତ୍ର ତାଙ୍କର ଆଖିକୁ ଆଉ ଭଲ ଦେଖା ଯାଉନାହିଁ କି କାନକୁ ଭଲ ଶୁଭୁନାହିଁ ।"

ସମସ୍ତେ ଗପ ଶୁଣି ସାରିବା ପରେ ଦୀର୍ଘ ନିଃଶ୍ୱାସ ପକାଇଲେ । ଆସର ଭାଙ୍ଗିଗଲା । ବିଦାୟ ନେଇ ଗଲାବେଳକୁ ଶଙ୍କର କହିଲା—ଆସନ୍ତା କାଲି ମୁଁ ମୋ ଅଜାଙ୍କ କଥା କହିବି । ତୁମେ ସବୁ ବେଗାବେଗି ଆସରକୁ ଆସିବା ଦରକାର ।



# ଅଜା ଧରିଲେ ଚୋର

ଶଙ୍କରର ଆଜି ପାଳି । ସେ ତା' ଅଜାଙ୍କ ବିଷୟରେ ମଜା ଗପଟିଏ କହିବ । ସେଦିନ ସ୍କୁଲରେ ଦ୍ୱିତୀୟ ପିରିୟଡ଼ରେ ଶିକ୍ଷକ ଶ୍ରେଣୀକୁ ଆସିଲେ ନାହିଁ । ପ୍ରଧାନ ଶିକ୍ଷକ ପିଲାଙ୍କୁ ଖେଳିବାକୁ ଛୁଟିଦେଲେ । ପିଲାମାନଙ୍କ ଭିତରୁ କିଏ ଖେଳିଲେ, କିଏ ବୁଲିଲେ । ମାତ୍ର ଆମଶ୍ରେଣୀର ପିଲାମାନେ ସ୍କୁଲ ହତାରେ ଥିବା ଝଙ୍କାଳିଆ ବରଗଛ ମୂଳେ ଶଙ୍କରକୁ ଘେରି ବସିଗଲେ । ଶଙ୍କର ଆରମ୍ଭ କଲା :—

ମୋ ହରିମାମୁଁ ଗାଁ ସ୍କୁଲରେ ପଢ଼ୁଥିଲେ । ସେ ସେମିତି ଭଲ ପଢ଼ନ୍ତି ନାହିଁ । ଯେହେତୁ କେହେତୁ ପ୍ରକାରେ ମାଟ୍ରିକ ଖଣ୍ଡି ସପ୍ଲିମେଣ୍ଟାରୀ ପରୀକ୍ଷାରେ ତୃତୀୟ ଶ୍ରେଣୀରେ ପାଶ୍ କଲେ । କଲେଜରେ ଆଉ ଜାଗା ପାଇଲେ ନାହିଁ । ବାଧ୍ୟ ହୋଇ ଘରେ ବସିଲେ । ଘରେ ବସି ପିଲାଙ୍କର ଯାହା ଅବସ୍ଥା ହୁଏ, ହରି ମାମୁଁଙ୍କର ସେହି ଅବସ୍ଥା । ଆଜି କେଉଁ ଗାଁରେ ଯାତ୍ରା ହେଲା ତ ପଞ୍ଚାଏ ଟୋକାଙ୍କୁ ଧରି ଗଲେ ଯାତ୍ରା ଦେଖିବାକୁ । ରାତିସାରା ଅନିଦ୍ରା ହୋଇ ଯାତ୍ରା ଦେଖାହେଲା । ସକାଳୁ ଫେରିଲେ । ସ୍ନାନପର୍ବ ସାରି ଖାଇଦେଇ ଶୋଇଲେ ଯେ, ନିଦ ଭାଙ୍ଗୁ ଭାଙ୍ଗୁ ସନ୍ଧ୍ୟା । ଯେଉଁଦିନ ଯାତ୍ରା ଦେଖାନାହିଁ, ସେଦିନ ଖେଳରେ କମ୍ବା ଭୋଜିରେ ଦିନଟି କଟିଗଲା । ଖାଲି ଖେଳିବା, ବୁଲିବା, ଭୋଜି କରିବା, ମାଛ ମାରିବା ଏହି ହେଲା ସେପରିକି ତାଙ୍କର ଧନ୍ଦା । ଘର କାମଟିଏ ଯଦି ଅଜା ଆଣ୍ଡି ବତାଇଲେ, ତାଙ୍କ ଉପରେ ଖପା ହୋଇ ଉଠିଲେ । "ମୋତେ ଇଲେ ବେଳ ନାହିଁ, ମୁଁ କରି ପାରିବିନି" ବୋଲି କହି ଯାଇ ରାସ୍ତାରେ ହାଜର ।

ଅଜା, ଆହ୍ନଙ୍କର ହରିମାମୁଁ ଗୋଟିଏ ବୋଲି ପୁଅ । ତେଣୁ ସେ ତାଙ୍କୁ କିଛି କହନ୍ତିନାହିଁ । ଅଜାଙ୍କର ଜମି ଅଛି । ସେ ଘରେ ମୂଲିଆ, ବଳଦ, ଲଙ୍ଗଳ ରଖି ନିଜେ ଚାଷ କରନ୍ତି । ଅଜାଙ୍କ ବିଲରେ ଧାନ, ମୁଗ, ସୋରିଷ, ହରି କୋଳଥ ଇତ୍ୟାଦି ଚାଷ ହୁଏ । ତାଙ୍କ ଜମିଗୁଡ଼ିକ ନାଳକୂଳିଆ ନ ହେଲେ ମଧ୍ୟ ପାଖରେ ଯୋଡ଼ ଥିବାରୁ ଚାଷପାଇଁ ପାଣିର କିଛି ଅସୁବିଧା ନଥାଏ ।

ଧାନ ପାଚିଲାବେଳକୁ ଅଜା ମୁଗ ଗୁଣ୍ଡି ଦେଇଥାନ୍ତି । ଧାନ କଟା ହେଲାବେଳକୁ ମୁଗଗଛଗୁଡ଼ିକ ବଡ଼ ବଡ଼ ହୋଇ ଯାଇଥାଏ । ପୌଷମାସ । ଧାନ କଟା କଟି ଚାଲିଥାଏ । ସ୍ୱେର

ମଧ୍ୟ ପ୍ରବଳ ଗର୍ଜନରେ ମାଡିଆନ୍ତି । ରାତିରେ ବିଲରେ ପଶି ଧାନ ଶିଷାଗୁଡ଼ିକ ଛୁଣ୍ଡାଇ ନେଇ ଚାଲିଯାଆନ୍ତି । କାହାର କାହାର ବିଲରୁ ମଧ୍ୟ ଧାନ କାଟିନେଇ ଚୋରି ହେଉଥାଏ, ଏଣେ ଗୋରୁ ଗାଈ ଷଣ୍ଢ ପଶି ଧାନ, ମୁଗ ଗଛ ସବୁ ନଷ୍ଟ କରି ଦେଉଥାନ୍ତି । ତେଣୁ ବାଧ୍ୟ ହୋଇ ବିଲ ମଝିରେ ପଲ୍‌କରି ଯେ ଯାହାର ଫସଲ ଜଗୁଥାନ୍ତି । ଅଜାଙ୍କର ମୂଲିଆଟି ଯାଇ ତାଙ୍କ ଫସଲ ପ୍ରତିଦିନ ଜଗେ ।

ଆମଘରର ପିଲାମାନେ ପଚାରିଲେ—"ସେ ମୂଲିଆକୁ ରାତିରେ ଏକୁଟିଆ ବିଲରେ ଶୋଇଲେ ଡର ମାଡୁନା ?

"ଆଖ ଆଖ ସମସ୍ତଙ୍କ ବିଲରେ ତ ଲୋକ । ଆଉ ଡର କଅଣ । ତାପରେ ସେମାନଙ୍କର ରାତିରେ ବିଲ ଜଗିବା ଅଭ୍ୟାସରେ ପରିଣତ ହୋଇଗଲାଣି । ଶଙ୍କର ଏହା କହି ପୁଣି ଆରମ୍ଭକଲା--ସେଦିନ ଅଜାଙ୍କ ଚାକରଟିକୁ ଭୀଷଣ ଜ୍ୱର ହୋଇଥାଏ । ସେ ଶେଯରୁ ଉଠି ପାରୁ ନଥାଏ । ଚାକର ଅବସ୍ଥା ଦେଖି ଅଜା ଘର ମାମୁଁଙ୍କ ରାତିରେ ବିଲ ଦେଖିବା ପାଇଁ କହିଲେ । ମାମୁ ସେ ଶୁଣି ନ ଶୁଣିଲା ପରି ବାହାରକୁ ଚାଲିଗଲେ । ଅଜା ମଧ୍ୟ ବାଧ୍ୟ ହୋଇ ବିଲ ଜଗିବାକୁ ବାହାରିଲେ । ଏହା ହେଉଛି ଗଲା ବର୍ଷର ଘଟଣା । ମୋର ବାର୍ଷିକ ପରୀକ୍ଷା ଫଳ ବାହାରି ସ୍କୁଲ ଛୁଟି ହେବା ପରେ ମୁଁ ଯାଇଥାଏ ଅଜାଙ୍କ ଘରକୁ । ଅଜା ଯେମିତି ବିଲକୁ ବାହାରିଲେ ମୋର ଟିକିଏ ମନ ହେଲା ଅଜାଙ୍କ ସାଥିରେ ଯିବାକୁ । ତେଣୁ ମୁଁ ମୋ ମନ କଥା ପେଟରେ ରଖି ନପାରି କହିଲି--ଅଜା ମୁଁ ତୁମ ସାଙ୍ଗରେ ଯିବି ।"

ମାତ୍ର ଆଈ ହାଣ୍ଡିଶାଳ ଘରୁ ପାଟିକରି ଉଠିଲେ –"ନାହିଁ, ନାହିଁ, ତୋର ବିଲ ଜଗିଯିବା ଦରକାର ନାହିଁ । ରାତିରେ ଥଣ୍ଡା ପବନ ତୋ ଦେହରେ ଯିବନି । ଦି'ଦିନ ପାଇଁ ଏଠାକୁ ଆସିଛୁ । ଦେହ ଖରାପ କରି ଯିବୁ ?"

ଅଜା କହିଲେ –"ଯିବ ଯଦି ଚାଲୁ । ବିଲରେ ତ ପାଲ ହୋଇଛି । ତା ଭିତରେ ଘୋଡ଼ି ଘାଡ଼ି ହୋଇ ଶୋଇବ । ବରଂ ଆମେ ଅଜା ନାତି ଗପକରି ରାତିଟା କଟାଇ ଦେବୁ ।"

ଆଈ କଅଣ କହି ଆସୁଥିଲେ । ମାତ୍ର ମୁଁ ତାଙ୍କୁ କହିଲି –"ଆଜି ରାତିଟା ମୁଁ ଅଜାଙ୍କ ସାଙ୍ଗରେ ଯାଉଛି । କାଲି ପରେ ନ ଯିବି ।"

ଅଜା ଗୋଟେ ଫୁଲପ୍ୟାଣ୍ଟ ପିନ୍ଧିଲେ ତା' ଉପରେ ଗୋଟେ ଲୁଗା ପିନ୍ଧିଲେ । ଲୁଗା ଉପରେ ପିନ୍ଧିଲେ ପଟେଇ, ତା ଉପରେ ପୁରାହାତ ଜାମା, ତା ଉପରେ ସ୍ୱିଟର, ତା ଉପରେ କୋଟ ପିନ୍ଧିଲେ । ଦେହରେ ଗୋଟିଏ ମୋଟା ଚଦର ଘୋଡ଼ାଇ ହାତ ଠେଙ୍ଗା, ଝଟ ଧରି ବାହାରିଲେ ।

ମୋ ପୋଷାକ ମଧ୍ୟ ବଢ଼ିଆ ଥିଲା । ମୁଁ ଦୁଇଟା ଫୁଲପେଣ୍ଟ ତା ଉପରେ ଦୁଇଟା ଗଞ୍ଜି, ଗଞ୍ଜି ଉପରେ ଦୁଇଟା ପୁରା ହାତବାଲା ଜାମା ପିନ୍ଧିଲି । ମୁଣ୍ଡରେ ଗୋଟିଏ ମଫଲର ଗୁଡ଼େଇଲି । ମୁଁ ମଧ୍ୟ ଗୋଟିଏ କମ୍ବଳ ଘୋଡ଼େଇ ହୋଇ ଅଜାଙ୍କ ପରି ଠେଙ୍ଗା ଗୋଟିଏ ଧରି ବାହାରି ପଡ଼ିଲି ।

ଆଈ ଆମ ଦୁହିଁଙ୍କର ବେଶ ପୋଷାକକୁ ଦେଖି ଅଟ୍ଟହାସ କରି କହିଲେ – "ତୁମେ ଅଜା, ନାତି ଦୁଇଜଣ ଯାକ କୌଣସି ଯାତ୍ରା ଦଳରେ ମିଶି ଯାଆନ୍ତ । ଅଜାଙ୍କୁ ମନ୍ତ୍ରୀ, ଆଉ ନାତିକୁ ବିଦୁଷକ କଲେ ଭାରି ମାନନ୍ତା ।"

ଅଜା କ ଛାଡ଼ିବା ଲୋକ । ସେମିତି ଆଈଙ୍କୁ ଅଟ୍ଟହାସ କରି କହିଲେ – 'ତୁମେ ମଧ୍ୟ ମନ୍ତ୍ରିଆଣୀ ହୋଇ ବାହାରନ୍ତ । ଆଖିରେ କଳା ଚଷମା । ଗୋଡ଼ରେ ହାଇହିଲ ଯୋତା, କାନରେ ଝର୍ଣ୍ଣା, ପିପରମେଣ୍ଟ ଦିଆ ପାନ, କାନରେ ଦାନ୍ତକାଠି, ହସି ପାଉଁସ, ତୁମକୁ ବେଶ ମାନନ୍ତା ଯେ ।

ଏହିପରି ହସ ମଜଲି ହୋଇ ଆମେ ଅଜା ନାତି ବାହାରିଲୁ । ଆଈ ଦାଣ୍ଡଘର ଦୁଆର ବନ୍ଦକରି ଭିତରକୁ ଗଲେ ।

ଅଜା ଓ ମୁଁ ରାସ୍ତାକୁ ଆସି ଦେଖିଲୁ ଅଜାଙ୍କ ଆଗ ସାମନା ଘରର ମଦନ ଅଜା ମଧ୍ୟ ତାଙ୍କ ଧାନକଆଗ ଜଗିବାକୁ ବାହାରିଛନ୍ତି । ଅଜାଙ୍କୁ ଦେଖି କହିଲେ – "କିରେ ମଦନ କିରେ ? କେଉଁଣ ବିଲକୁ ଯାଉଛୁ ?"

ମଦନ ଅଜା ଆମ ଅଜାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ – "ହଇହେ ନାହିଁ, କାଲିକେ ନାହିଁ, ଆଜି କଉଣ ସୂର୍ଯ୍ୟ ପଶ୍ଚିମ ଦିଗରୁ ଉଇଁଥିଲେ ନା କଅଣ । ସାଧୁଭାଇ ଆଜି ବିଲ ଜଗିବାକୁ ବାହାରିଛନ୍ତି. କମ ସୌଭାଗ୍ୟର କଥା ନୁହେଁ ।"

ଅଜା ଆଗର କହିଲେ—"ଶୁକର କୋଠାକୁ ଘର କର । ଧାନଗୁଡ଼ାକ ବିଲରେ କଟା ହୋଇ ପଡ଼ିଛି । ଆଜକାଲି ବେଳକାଳ ଯାହା ହେଲାଣି ଆଖିରେ ଲଗାଇଥିବା କଜ୍ଜଳ ସୁଦ୍ଧା ଟିକିଏ ଅସାବଧାନ ହେଲେ ଲୋକେ ନେଇଯିବାକୁ ଘୁଞ୍ଚି ବସିଛନ୍ତି । ଆଉ ବିଲରେ କଟାଧାନ ରହିବ ?

"କେମନ, କହନ, ଲୋକଙ୍କ କଥା । ବିନା ପରିଶ୍ରମ, ବିନା ଟଙ୍କା ଖର୍ଚ୍ଚରେ ଲୋକେ ଚାହୁଁଛନ୍ତି ବଡ ବଡ ଧନୀ ହୋଇ ଅଟ୍ଟାଳିକା କୋଠା ତିଆରି କରିବେ, ନଅ ଭଜା, ଛଅ ତିଅଣ ଖାଇବେ । ପରିଶ୍ରମ ତ କରିବେ ନାହିଁ, ଆସିବ କେଉଁଠୁ । ଏହି କେବଳ ଉଡ଼ାପୁଡ଼ାରୁ କି ? ସେଣୁ ସେମାନଙ୍କ ଘରେ କାହିଁକି ଧନ ଦବନ କହୁନ"—ମଦନ ଅଜା କହି କହି ନଡ଼ିଆ ଖୋଳ ଭିତରେ ଥିବା ହୁଳା ମୁଣ୍ଡରେ ନିଆଁ ଲଗାଇ ହୁଳାଇ ହୁଳାଇ ଆଗରେ ବୁଲିଲେ ।

ତାଙ୍କ ପଛେ ପଛେ ଚାଲିଥାଏ ମୁଁ । ମୋ ପଛେ ପଛେ ଅଜା ?

"ଏତେ ରାତିରେ ଯାଉଥାଉ । ତୋତେ ଡର ଲାଗୁ ନଥାଏ—" ଅବିନାଶ ପଚାରିଲା ।

ଶଙ୍କର କହିଲା—"ଡର କଅଣ ? ମଦନଅଜା ଆମ ଅଜା ମଝିରେ ତ ମୁଁ ଥାଏ । ମୋତେ କାହିଁକି ଡର ଲାଗିବ ?"

ଆମ ଅଜା କହିଲେ—ଆଜିକାଲି ନିଜ ପିଲାଙ୍କୁ ମଧ୍ୟ କଥା କହି ହେଉନି । ବୁଲୁଛନ୍ତି । ଗୋଟେ କାମ ବତେଇଲେ ଯେପରି କି ତାଙ୍କୁ ବାଘ, ସିଂହ ଖାଇଗଲା ପରି ଉପୁ ମାଡ଼ି ଆସୁଛି । ହରିକୁ କହିଲି ବିଲକୁ ଯାଆ ବୋଲି । ହେଲେ କଅଣ ଶୁଣିଲା ?

ମଦନ ଅଜା କହିଲେ—"ସେମାନଙ୍କ କଥା କହନ ସାଧୁଭାଇ ! ମୁଁ ସେହିଥିରୁ ଗୋଟାଏ କୁଳାଙ୍ଗାର ପୁଅ ଜନ୍ମ କରିଛି । ଆଜି ଭଲ ଖାଇବୁ ପଇସା ଦିଅ, କାଲି ଭଲ ପିନ୍ଧିବୁ ପଇସା ଦିଅ । ଆଜି ସହର ବଜାରକୁ ବୁଲିଯିବୁ, ମଉଜ ମଜଲିସ କରିବୁ ପଇସା ଦିଅ । ମାତ୍ର ପଇସାଟା କେମିତି ଆସିବ, ତାର କଅଣ ଚିନ୍ତା ଦେଉ ଅଛୁ ? ପାଠ ନ ପଢ଼ିଲୁ ନାହିଁ, ହେଲେ ଚାଷ ବାସରେ କଅଣ ମୁଣ୍ଡ ପୂରାଇଲୁ ? ଯେତେ କହିଲି, ମୋ କଥା ମୋତି, ତା କାମ ତାର । ଏବେ ସନ୍ଧ୍ୟାବେଳକୁ ବୈଷ୍ଣବର ଚାଷ ମାଡ଼ ଚାଲିଛି । ଧାନଗୁଡ଼ାକ

ଚୋର ନେଇ ଯାଉଛନ୍ତି, ଟିକିଏ ବଳକୁ ଯା କହିବାରୁ କଅଣ କହିଲ ଶୁଣିବ । କହୁଛି—ତୁମକୁ ପଦ ବଳ କରିବାକୁ କଷ୍ଟ ଲଗୁଛି, ବଳଗୁଡ଼ାକ ବଢ଼ ଦଉନ ?

ବଳ ବଢ଼ିଲେ ଖାଇବେ କଅଣ ? ଅଜା ଆମର କହି ହସିବାରେ ଲାଗିଲେ ।

ପଦନ ଅଜା କହିଲେ—"ସେହି କଥା । ବଳ ମୋର ଭାତ ହାଣ୍ଡି । ସେହିଥିରୁ ଭଲ ମନ୍ଦ, ଯାନ ଯାତ୍ରା, ପୁଣ୍ୟ, ପର୍ବ ସବୁ ଖର୍ଚ୍ଚ ହେଉଛି । ତିନି ତିନିଟା ମାଇକନା ଝିଅ । ଆମେ ବାପ, ପୁଅ, ମା ହୋଇ ତିନିଜଣ । ଛଅ ପ୍ରାଣୀ କୁଟୁମ୍ବ, ବଳ ବଢ଼ିଲେ ଚଳି ପାରୁଚି ? ହଁ ପୁଅ ସେମିତି ଇଞ୍ଜିନିଅର, ଡାକ୍ତର ହୋଇଥାନ୍ତେ । ମାସକୁ ହଜାର ହଜାର ଟଙ୍କା ଆଣୁଥାନ୍ତେ, ତେବେ ଆମକୁ କଅଣ ଏ ବୟସରେ ଶୀତ କାକରରେ ବନବାଡ଼ି ବଳରେ ପଡ଼ିବା ଭଲ ଲଗୁଥାନ୍ତା ?"

କଥାବାର୍ତ୍ତା ମଝିରେ ଆମେ ବଳ ପାଖରେ ଆସି ପହଞ୍ଚିଗଲୁ । ଅଜା କହିଲେ ପଦନ ଆପଦ ବିପଦରେ ଡାକ ମାରିଲେ ଯେପରି ସଙ୍ଗେ ସଙ୍ଗେ ଆସି ପହଞ୍ଚିବୁ ।"

ପଦନ ଅଜା ତାଙ୍କ ବଳକୁ ଯାଉ ଯାଉ କହିଲେ—ଏ କି କଥା କହୁଛ ଧାଧୁଭାଇ । ଦରକାର ଦରକାରକୁ ତ ସାହାଯ୍ୟ କରିବାନି, ଆଉ କରିବ କିଏ । କଅଣ ଗାଁ ଚଣ୍ଡା ହୋଇଛି ଅଜଣାର ଘୋର, କିଛି ବ୍ୟସ୍ତ ହୁଅନି । ସମସ୍ତଙ୍କ ବଳରେ ଲୋକ ଅଛନ୍ତି । ଡାକ ମାରିଲା ମାତ୍ରକେ କୋଡ଼ିଏ ପଚିଶ ଜଣ ଆସି ପହଞ୍ଚିଯିବେ ।"

ଆମେ ଅଜା, ମୁଁ ଆମ ବଳକୁ ଗଲୁ । ଗୁଡ଼ାଏ କାଠ ପୋତା ହୋଇ ତାଉପରେ ଘର ଭଳି ଚାଳପତ୍ର ବାହୁଙ୍ଗାରେ ବଖରାଏ ଘର ହୋଇଛି ତଳେ ନଡ଼ା ପଡ଼ିଛି । ତା ଉପରେ ପଡ଼ିଛି ସତରଞ୍ଜି ମଶିଣାଟିଏ । ଯେଉଁ ଶୀତ । ଅଜା କହିଲେ "ତୁ ଶଙ୍କର ମୋ ପଦର, ତୋ କମଳ ଯୋଡ଼ି ଦେଇ ଯୋଡ଼ି ହୋଇ ଶୋଇପଡ଼ । ମୁଁ ବସିଛି, ମତେ ନିଦ ଲାଗିଲେ ତୋ ତ ଉଠାଇ ଦେବି । ତୁ ଜଗି ବସିବୁ ମୁଁ ଶୋଇବି ।"

ମୁଁ ତାଙ୍କ କଥା ମାନି ଶୋଇ ପଡ଼ିଲି । ଅଜା ଅସିଲାବେଳେ ଥରମଫ୍ଲାସ୍‌ରେ ଗୁ ଆଣିଥିଲେ । ବାହାରୁ ଟିକିଏ ଖାଇ, ପାନ ଖଣ୍ଡିଏ ପାଟିରେ ପକାଇ ଲବଣ୍ୟବତୀରୁ ଛାନ୍ଦ ବୋଲିବାକୁ ଆରମ୍ଭ କରିଦେଲେ । ଅନ୍ୟ ବଳମାନଙ୍କରୁ କିଏ ଲବଣ୍ୟବତୀରୁ ଛାନ୍ଦ ପକାଇ ଥାଏ ତ କିଏ ମନବୋଧ ଚଉତିଶାରୁ ଛାନ୍ଦ ପକାଇ ଥିବାର ଶୁଣା ଯାଉ ଥାଏ ।

ତୋତେ ଉଠାଇ ଦେବ । ତୁ ଜଗି ବସିବୁ । ମୁଁ ଶୋଇବ ।"

ମୁଁ ତାଙ୍କ କଥା ମାନି ଶୋଇ ପଡ଼ିଲି । ଅଜା ଆସିଲାବେଳେ ଥରମଫ୍ଲାସ୍‌ରେ ଚା ଆଣିଥିଲେ । ଚା'ରୁ ଟିକିଏ ଖାଇ, ପାନ ଖଣ୍ଡିଏ ପାଟିରେ ପକାଇ ଲବଣ୍ୟବତୀରୁ ଛାନ୍ଦେ ବୋଲିବାକୁ ଆରମ୍ଭ କରିଦେଲେ । ଅନ୍ୟ ପଲମାନଙ୍କରୁ କିଏ ଲବଣ୍ୟବତୀରୁ ଛାନ୍ଦ ପକାଇଥାଏ ତ କିଏ ମନବୋଧ ଚଉତିଶାରୁ ଛାନ୍ଦ ପକାଇଥିବାର ଶୁଣା ଯାଉଥାଏ ।

ମୋତେ କେତେବେଳେ ନିଦ ଲାଗିଯାଇଛି ମୁଁ ଜାଣିପାରିନି । ଅଜାଙ୍କର ମଧ୍ୟ ରାତି ଅନିଦ୍ରା ହେବାର ଅଭ୍ୟାସ ନାହିଁ । ସେ କେତେବେଳେ ମୋ ପାଖରେ ଶୋଇ ପଡ଼ିଛନ୍ତି, ତାଙ୍କର ମଧ୍ୟ ଖିଆଲ ନାହିଁ । ହଠାତ୍ ପଦନ ଅଜାଙ୍କ ପାଟିରେ ଆମ ନିଦ ଭାଙ୍ଗିଗଲା । ପଦନ ଅଜା ଆମ ପଲଉପରକୁ ଉଠି ଆସି ତୁନି ତୁନି ଅଜାଙ୍କୁ ଉଠାଇ କହିଲେ – "ସାଧୁ ଭାଇ, ସାଧୁ ଭାଇ, ଶୋଇଛ କଅଣ, କୁମ୍ଭୀର ଆସି ମଞ୍ଚି ନଷ୍ଟରେ କରିବାକୁ ବସିଲାଣି ।"

ପଦନ ଅଜାଙ୍କ ପାଟିରେ ମୁଁ ଚମକି ପଡ଼ିଲି । ପଦନ ଅଜା ବୋଲି ମୋର ହଠାତ୍ କାହିଁକି ଖିଆଲ ହେଲା ନାହିଁ । ମୁଁ ଭାବି ନେଲି କୌଣସି ଚୋର କିମ୍ବା ଡକାୟତ । ମାତ୍ର ଅଜା ଯେମିତି ଉଠିଲେ ମୋର ଟିକିଏ ସାହସ ହୋଇଗଲା ।

ଅଜା ଆମର ହଠାତ୍ ଉଠିପଡ଼ି କହିଲେ – "କଅଣ ହେଲା ପଦନ ?"

ପଦନ ଅଜା କହିଲେ—"କିଛି ଦେଖି ପାରୁନ ? ହେଇ ବିଲ ଶେଷମୁଣ୍ଡକୁ ଚାହିଁ, ତୁମ ବିଲ ଆଉ ଆମ ବିଲ ଶେଷ ମୁଣ୍ଡରେ ଚୋର ପଶି ଧାନ ସୀସା କାଟି ନେଇ ଯାଉଛନ୍ତି ।"

ଅଜା ସେତେବେଳକୁ ଟିକିଏ କାହିଁକି ଭୟ କରିଗଲେଣି । ମୋର ମଧ୍ୟ ଗୋଡ଼ ହାତ ଚୋର ନାଁ ଶୁଣି ଥରିଲାଣି । ଚୋର, ଡକାୟତଙ୍କର ତ ବୁଦ୍ଧି ବିବେକ କିଛି କାମ କରେ ନାହିଁ । ଖାଲି ମାରେ, ହାଣେ, ଧରେ, ଏଇ ହେଲା ତାଙ୍କ କାମ ! ସେମାନଙ୍କ ପାଖରେ ଛୁରୀ ଥିବ କି ବନ୍ଧୁକ ଥିବ, କିଏ ଜାଣିଛି ।"

"ତାପରେ କଅଣ ହେଲା ?" ଆସରର ପିଲାମାନେ ଏକାବେଳକେ ପଚାରି ଉଠିଲେ ।

ଶଙ୍କର କହିଲା – "ପଦନ ଅଜା କହିଲେ – ମୁଁ ଯାଇ ଅନ୍ୟ ପଲ୍ଲୀରେ ଖବର ଦେଇ ଆସୁଛି । ଚାରିପଟେ ଘେରି ଯାଇ, ସେମାନଙ୍କୁ ନ ଧରିଲେ ଆଉ ଉପାୟ ନାହିଁ ।"

ପଦନ ଅଜା ଏହା କହି ଅନ୍ୟ ପଲ୍ଲୀକୁ ଯାଇ ଖବର ଦେଲେ । ପଲ୍ଲୀକୁ ପଲ୍ଲୀ ଖବର ହୋଇଗଲା । ପଦନ ଅଜା ଆମ ପଲ୍ଲୀକୁ ଫେରି ଆସି କହିଲେ—ଆସ, ଅନ୍ୟମାନେ ବାହାରି ପଡ଼ିଲେଣି ।

ସେଦିନ କୃଷ୍ଣପକ୍ଷ ଅଷ୍ଟମୀ ରାତି, ପ୍ରଥମ ଦ୍ୱିପ୍ରହର ଅନ୍ଧାର ପରେ ଜହ୍ନ ପଡ଼ୁଥାଏ ସତ; ମାତ୍ର ଝାପସା କୁହୁଡ଼ି ଓ ବଉଦ ଯୋଗୁ ଜହ୍ନ ଆଲୁଅରେ ଧାନକେଣ୍ଡା କାଟୁଥିବା ଲୋକଗୁଡ଼ିକ ଅସ୍ପଷ୍ଟ ଦେଖା ଯାଉଥାନ୍ତି ।

ଅଜାଙ୍କର ହାତେ ଉଚ ଠେଙ୍ଗାଟିଏ, ପଦନ ଅଜାଙ୍କର ହାତେ ଉଚ ଠେଙ୍ଗା, ମୁଁ ସେ ପଲ୍ଲୀ ଭିତରୁ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଘରୁ ଆଣିଥିବା ବାଉଁଶ ଠେଙ୍ଗାଟି ଡାହାଣ ହାତରେ ଧରି ଗାରଦର୍ପରେ ସେମାନଙ୍କ ସଙ୍ଗେ ଚାଲିଥାଏ । ମୁଁ ଆମର ଦୁଇ ପଟକୁ ଚାହିଁ ଦେଖୁଥାଏ, ଖୁବ୍ ସତର୍କତାର ସହିତ ଚୋର ଧରିବା ପାଇଁ ଲୋକସବୁ ଚାଲିଥାନ୍ତି ।

ଆମ ଦଳର ଗୋଟିଏ ପାଖରେ ପଦନ ଅଜାଙ୍କ ଦଳ । ଆର ପାଖରେ ବଶି ଅଜାଙ୍କ ଦଳ । ବଶି ଅଜାଙ୍କ ଦଳ ଜଗିଥାଏ ତାଙ୍କ ହଳିଆ ସପନ । ସପନ ଦେଖିବାକୁ ବେଶ ହୃଷ୍ଟପୁଷ୍ଟ । ଦିଶୁଥାଏ ଗୋଟିଏ ପହିଲମାନ ଭଳି । ସେ ମୁଣ୍ଡେ ଉଚର ଗୋଟିଏ ମୋଟା ବାଉଁଶର ଠେଙ୍ଗା ଧରି ଆମ ପାଖେ ପାଖେ ଚାଲିଥାଏ । ପଦନ ଅଜା ସପନକୁ ଡାକି ତା କାନରେ କହିଲେ "ଦେଖ ସପନ, ଏ ଚୋର ଯେପରି ତୋ ହାବୁଡ଼ରୁ ଖସି ନଯାଏ । ଏମାନେ ଥରେ ଖସିଗଲେ, ତାଙ୍କର ସାହସ ବଢ଼ିଯିବ । ଆମକୁ ଆଉ ଧାନ କେଣ୍ଡାଟିଏ ଦେଖାଇ ଦେବେନି ।"

ସପନ ମନେ ମନେ ନିଜକୁ ଖୁବ ସାହସିକ ଆଉ କାର୍ଯ୍ୟଦକ୍ଷ ବୋଲି ବୁଝିଥିଲା । ସେଥିପାଇଁ ତା ମନରେ ଖୁବ ଗର୍ବ । ସେ ତା ଛାତିକୁ ଫୁଲାଇ, ଆଖିକୁ ତରାଟି, ଠେଙ୍ଗାକୁ ଉପରକୁ ଉଠାଇ କହିଲା—"ଆଜି ଚୋରଙ୍କର ଦିନେ କି ମୋର ଦିନେ । ତାଙ୍କର ଭାଗ୍ୟ ଯଦି ଭଲଥିବ, ଭଲରେ ଭଲରେ ଧରା ଦେଇଦେବେ । ନଚେତ୍ ଗୋଡ଼ ହାତ ଖଣ୍ଡା ନକରି, ତାକୁ ନଫଟାଇ ସପନ ଛାଡ଼ୁନି ।"

ଚୋରଟ ମହାଚାଲାକ । ତାଙ୍କର ଚଉଦିଗକୁ ଆଖି । ଲୋକସବୁ ଚୋରପଛୁ ଧେଇଁ ଆସୁଥିବାର ଦେଖି କିଏ କୁଆଡେ ଦୌଡ଼ି ପଳାଇଲେ । ଲୋକସବୁ ତାଙ୍କପଛରେ ଗୋଡ଼ାଇଲେ । ଚୋରଙ୍କ ଭିତରୁ ଦୁଇଜଣ ପାଖରେ ଥିବା ଗୋଟିଏ ଝଙ୍କାଳିଆ ଆମ୍ବ ଗଛରେ ଚଢ଼ିଗଲେ । ଲୋକେ ଏଣେ ତେଣେ ଦୌଡ଼ା ଦୌଡ଼ି ଭିତରେ ପଦନ ଅଜା ପାଟିକରି କହିଲେ— “ଆରେ ଏ ଆମ୍ବ ଗଛରେ ଲୁଚିଛନ୍ତିରେ ।”

ଲୋକସବୁ ଆମ୍ବ ଗଛ ମୂଳେ ଆସି ଜମା ହୋଇଗଲେ । ଆମ ଅଜା ଆମ୍ବ ଗଛ ଉପରକୁ ଟର୍ଚ୍ଚ ପକାଇଲେ । ଜହ୍ନ ଆଲୁଅ ଆଉ ଟର୍ଚ୍ଚ ଆଲୁଅରେ ଲୋକ ଦୁଇଜଣ ଆମ୍ବ ଗଛର ପତ୍ର ଗହଳରେ ବସିଥିବାର ସ୍ପଷ୍ଟ ଦେଖାଗଲେ । ଲୋକେ ପାଟି କରି ଚୋର ଦୁଇଟାଙ୍କୁ ସତର୍କ କରାଇ କହିଲେ – “ଭଲ ଗତ ଅଛୁ ତ ତଳକୁ ଓହ୍ଲାଇ ଆସ । ନଚେତ୍ ତୁମ ଅବସ୍ଥା ଖରାପ ହୋଇଯିବ ।”

ପଦନ ଏବଂ ଆଉ ଦୁଇ ତିନିଜଣ ଲୋକ ଦୁଃସାହସ କରି ଆମ୍ବ ଗଛ ଉପରକୁ ଚଢ଼ିବାକୁ ଆରମ୍ଭ କଲେ । କିଛି ସମୟ ପରେ ଲୋକ ଦୁଇଟାଙ୍କୁ ଆମ୍ବ ଗଛରୁ ଧରି ଘୋଷାରି ଘୋଷାରି ଆଣି ସମସ୍ତଙ୍କ ସାମନାରେ ଠିଆ କରାଗଲା । ପଦନ ଦୁହିଁଙ୍କ ଗାଲକୁ ଠାଏ ଠାଏ କରି ଦୁଇ ଦୁଇ ଚାପୁଡ଼ା ବସାଇ ଦେଲା । କହିଲା – “ବଦମାସ, ଚୋରି କରି ପୁଣି ଗଛରେ ଲୁଚୁଛନ୍ତି ।”

ପଦନ ଅଜା ପାଟି କରି ଉଠିଲେ—“ଆରେ ମାରନା, ମାରନା; ମରିଯିବେ । ଆଗ ଦେଖ, ଲୋକ ଦି’ଟା କିଏ । ଆମ ଗାଁର ନା ଅନ୍ୟ ଗାଁର ।”

ଆମ ଅଜା ଟର୍ଚ୍ଚ ସେମାନଙ୍କ ମୁହଁକୁ ପକାଇ ଚମକି ପଡ଼ିଲେ । ହଠାତ୍ ତାଙ୍କ ପାଟିରୁ ବାହାରି ଆସିଲା – “କିଏରେ ଏ ଆମ ହରି ?”

ମୁଁ ଭଲ କରି ମୁହଁକୁ ଚାହିଁଲା ବେଳକୁ ଦେଖିଲି ସେ ଆମ ହରିମାମୁଁ । ମୁଣ୍ଡରେ ତାଙ୍କର ନେପାଳି ବୁଣା ଉଲ୍ଲର କୁଞ୍ଚୁକୁଞ୍ଚିଆ ଟୋପି । ଆଖିରେ କଳା ଚଷମା ।

ପଦନ ଅଜା ପାଟି କରି ଉଠିଲେ—କଅଣ କହିଲେ ସାଧୁ ଭାଇ ! ଏ ତମ ପୁଅ ହରି ? ଆଉ ଜଣଙ୍କ କିଏ ଠିକଏ ଦେଖିଲ ?

ଅଜା ଆମର ଅନ୍ୟ ଜଣଙ୍କ ମୁହଁକୁ ଚାହିଁ ଯକାଇଲେ । ପଦନଅଜା ମୁହଁକୁ ଘୃଣି କହି ଉଠିଲେ – ଅରେ ଏ ତ ମୋର ପୁଅ ବଇଷମା । ହଁ ଆଉ କଅଣ ଅଛିରେ ପୁଅ । ସ୍ୱେଚ୍ଛ କରିବନି ତ ଆଉ କଅଣ କରିବ ?"

ଅନ୍ୟ ମାନେ ପାଟି କରି ହସି ଉଠି କହିଲେ—ନିଜ ଘରେ ତ ସ୍ୱେର ଆଉ ବାହାର ଘ୍ୱେରଙ୍କୁ ଜଗିବା କଅଣ । ଭଲ ଲୋକ ଘର ପିଲେତ ଚୋରି କଲେ । ଆଉ କଅଣ୍ଡିଆ, ଗରିବ ଲୋକଙ୍କ ପିଲେ ଚୋରି କଲେ ବୋଲି ହାଟ ବସୁଛି । ଚାଲି, ଚାଲି, । ରାତ ଅନନ୍ତା, । ଅଥଚ ଫଳରେ ଦେଖିଲା ବେଳକୁ ମୁଗୁଣି ଚଳ ମେଲ ।

ପଦନ ନିଜ ପଲିକୁ ଫେରି ଯାଉ ଯାଉ କହିବାର ଶୁଣାଗଲା – "ଆଜି ମୋଠାରୁ ଦୁହିଁଙ୍କୁ ଦୁହେଁ ଯେଉଁ ବ୍ରହ୍ମ ଚାପୁଡ଼ା ଖାଇଛନ୍ତି ନା ମରିବା ପର୍ଯ୍ୟନ୍ତ ତାଙ୍କର ମନେ ରହିବ । ଆଉ ପିଲେ ଧାନ କେଣ୍ଡେ ଛିଣ୍ଡେଇବାକୁ ଜମିରେ ପଶିବା ପାଇଁ ସାହାସ କରିବେନି ।"

ଆମ ଅଜା ଏପର୍ଯ୍ୟନ୍ତ ମାରବନ୍ତରେ ସବୁ କଥା ଶୁଣୁଥିଲେ । ଅତି ଦୁଃଖରେ ରଙ୍ଗ ପଡ଼ିଲା ପରି କହିଲେ—"ହରି ଶେଷରେ ତୁ ଏପରି କଲୁ । ଚାକର, ବାକର ହଳିଆ ମୂଲିଆଙ୍କ ଠାରୁ ଚୋରି କରି ମାଡ଼ ଖାଇବାକୁ ତୋ ଭାଗ୍ୟରେ ଥିଲା । ତୋର କଅଣ ଅଭାବ ଅଛି । ଏ ହୀନ କାମ କରିବାକୁ ତୋ ମନ କେମିତି ଡାକିଲା ?

ହରିମାମୁଁ କାନ୍ଦି କାନ୍ଦି ଅଜାଙ୍କ ଗୋଡ଼ ଧରି କହିଲେ—ମୁଁ ତୁମ ପାଦ ଛୁଇଁ ଆଜିଠାରୁ ଶପଥ କରୁଛି ଜୀବନରେ ଆଉ ଚୋରି କରିବନି, ମିଛ କହିବନି । ପାଠ ପଢ଼ିବି, ତୁମେ ଯେତେବେଳେ ଯାହା କହିବ ମାନି ଚଳିବି ।"

ହରି ମାମୁଁଙ୍କୁ ଦେଖି ବଇଷ୍ଣବ ମାମୁଁ ପଦନି ଅଜାଙ୍କ ଦେହ ଛୁଇଁ ଶପଥ କଲେ— "ମୁଁ ଆଉ ଚୋରି କରିବନି । ତୁମଠାରୁ ଚାଷବାସ କାମ ଶିଖି ଚାଷ କରିବି ।"

ସେହି ଦିନଠାରୁ ହରି ମାମୁଁ ପାଠରେ ଏବଂ ବଇଷ୍ଣବ ମାମୁଁ ଚାଷରେ ମନ ଦେଲେ । ହରି ମାମୁଁ ହେଲେ ଡାକ୍ତର ଆଉ ବଇଷ୍ଣବ ମାମୁଁ ବର୍ତ୍ତମାନ ସେ ଅଞ୍ଚଳର ଜଣେ ନାମଜାଦା ଚାଷୀ ।

ଅବିନାଶ ପଚାରିଲା—ତୋ ହରିମାମୁଁ ଆଉ ବୈଷ୍ଣବ ମାମୁଁ କାହିଁକି ଚୋରି କରିବାକୁ ଯାଇଥିଲେ ?

ଦେବ ପଚାରିଲା—"ସେମାନେ କଅଣ ନିଜ ବଳ ବୋଲି ଜାଣି ପାରିଲେ ନାହିଁ ?"

ଶଙ୍କର କହିଲା—"ହଉ ମାମୁଁ ତହିଁ ପରଦାନ ସାଙ୍ଗ ମାନଙ୍କୁ ଚୂଡ଼ାଘଷା ଖାଇବାକୁ ଦେବାକୁ କହିଥିଲେ । ଅଜାତ ଏଥିପାଇଁ ଘରୁ ଧାନ ଆଉ ଦେବେନି । ତେଣୁ ଧାନ ଚୋରି କରିବାକୁ ତିନି ଚାରିଜଣ ଟୋକା ବାହାରି ପଡ଼ିଲେ । ସେମାନେ ସତରେ ନିଜ ବଳ ଠଉରେଇ ପାରିଲେନି । ଏଣେ ଧାନ କେଣ୍ଡା କାଟୁ କାଟୁ ଚାରିପଟୁ ଲୋକ ଆସି ଜମା ହୋଇଗଲେ ।"

ଶଙ୍କର କଥା ଶୁଣି ସମସ୍ତେ ଦୀର୍ଘ ନିଶ୍ୱାସଟିଏ ପକାଇଲେ । ଆସର ଭାଙ୍ଗି ଆସିଲା, ଆସରର ପିଲାଙ୍କ ତୁଣ୍ଡରେ ଶୁଣାଗଲା—"ଶଙ୍କରର ଦୁଇ ଅଜାଯାକ ବଡିଆ ଚୋର ଧରିଲେ ।"

ବନାମ୍ବର ସମସ୍ତଙ୍କ ଆଗରେ ଆସି ଠିଆହୋଇ କହିଲା—"କାଲି ମୁଁ ମୋ ଅଜାଙ୍କ କଥା କହିବ । ଗୁଣ୍ଡକୁ ଦମ୍ଭକରି ଆସିଥିବ ।"



# ମୂର୍ଖାର ବ୍ୟବସାୟ

ଆଜ ବାନାମ୍ବରର ତା ଅଜାଙ୍କ କଥା କହିବାର ପାଳି । ସେ ଆସି ପହଞ୍ଚିବା ମାତ୍ରେ ଗପ ଆସର ଜମି ଉଠିଲା । ବାନାମ୍ବର ଜାମା ପକେଟରୁ ଗୋଟିଏ ଗୋଟିଏ କମଳା ମିଠେଇ ସାଙ୍ଗ ମାନଙ୍କ ହାତକୁ ବଢ଼ାଇ ଦେଇ ନିଜେ ଗୋଟିଏ ଖାଇଲା । କହିଲା—"ମୁଁ ଗପ ଆରମ୍ଭ କରୁଛି । ଯାହାର ଯାହା ସନ୍ଦେହ ହେବ, ସେ ଗପ ଶେଷରେ ମୋତେ ପଚାରିବ । ଗପ ମଝିରେ କେହି ଯେପରି ବାଧା ନଦିଅ ।"

ବାନାମ୍ବର କହିଲା—ମୋ ଅଜାଙ୍କ ନାଁ ଘନଶ୍ୟାମ ନାୟକ । ସେ ମୁନିସିପାଲ୍‌ଟିର କ୍ୟାସିଅର । ଅର୍ଥାତ ମ୍ୟୁନିସପାଲଟି ଅଞ୍ଚଳରୁ ଓ ସରକାରରୁ ଯେତେ ଯାହା ଟଙ୍କା ଆଦାୟ ହୋଇ ଆସେ, ସବୁ ଆମ ଅଜାଙ୍କ ପାଖକୁ ଆସେ । ପୁଣି ଯାହା ସବୁ ଖର୍ଚ୍ଚ ହୁଏ, ଅଜା ତାକୁ ସବୁ ଦିଅନ୍ତି । ମୁନିସିପାଲ୍‌ଟିର କର୍ମଚାରୀ ମାନେ ମଧ୍ୟ ଅଜାଙ୍କ ଠାରୁ ଦରମା ନିଅନ୍ତି ।

ଅଜାଙ୍କ ମନ ସେଦିନ ଘୋର ଦୁଃଖଥାଏ । ମୁଣ୍ଡରେ ହାତ ଦେଇ ବାହାର ଘରେ ବସିଥାନ୍ତି । ପାଖରେ ବସିଥାନ୍ତି ଗାଁର ଦୁଇଜଣ ଲୋକ । କାହାର ପାଟିରୁ କଥା ବାହାରୁ ନଥାଏ । ସମସ୍ତେ ନୀରବ ।

ଅଜା କେତେବେଳ ପରେ ସେମାନଙ୍କୁ କହିଲେ—"ଡାକ୍ତରଖାନାର ବେହେରା, ମେହେନ୍ତର, ନର୍ସଙ୍କୁ ଠିକଏ ପଚାରିଲନି ?"

ଲୋକ ଦୁଇଜଣ କହିଲେ—"ସମସ୍ତଙ୍କୁ ପଚାରିଲୁ, କେହି କିଛି କହି ପାରିଲେନି । ସେମାନେ କହିଲେ ଓ୍ୟାର୍ଡ ବାରଣ୍ଡାରେ ତ ଥିଲା । କୁଆଡେ ଆଉ ଗଲା ଆମେ କହି ପାରିବୁନି ।"

"ତୁମର ଖଟିଆରୁ ତଳକୁ ଆଣି ଶବ ରଖିବା ଭୁଲ ହୋଇଛି"—ଅଜା ଟିକଏ ବ୍ୟସ୍ତ ଆଉ ବିରକ୍ତ ମିଶ ସ୍ୱରରେ କହିଲେ ।"

ଲୋକ ଦୁଇଜଣ କହିଲେ—"ଆମେ କଅଣ ଏତେ କଥା ଜାଣିଛୁ । ଆମେ ମଫସଲର ରହିବା ଲୋକ । ଆମକୁ କଅଣ ଡାକ୍ତରଖାନା କଥା ଜଣା । ମା ମରିଗଲା ପରେ ତା ଖଟିଆଟି ଟାଣିଆଣି ଡାକ୍ତରଖାନା ବାରଣ୍ଡାରେ ରଖି, ଆମକୁ କହିଲେ—ଶୀଘ୍ର ମୁର୍ଦ୍ଦାର ଉଠାଇ ନିଅ । ନ ହେଲେ ମେହେନ୍ତର ନେଇଯିବ ।"

"ତୁମ ଭିତରୁ ଜଣେ କଏ ଜଗି ରହିଲନି ? ଦୁଇଜଣ ଲୋକ କାହିଁକି ଘରକୁ ଗୁଡ଼ ଚାଲିଯାଉଥିଲ ? ମେହେନ୍ତର ବୋଧହୁଏ ନେଇ ପୋପାଡ଼ ଦେଇ ଆସିଲା ନା କଅଣ ! କମ୍ବା ଡାକ୍ତରୀ ଛାତ୍ରଛାତ୍ରୀ ମାନେ ପଢ଼ିବା ପାଇଁ ଯେଉଁ ଶବ ଘର ଅଛି, ମେହେନ୍ତର ସେଇଠି ନେଇ ରଖି ଦେଇଥିବ । ତୁମେ ଦୁଇଜଣ ଯାକ ମା ଶବକୁ ଛାଡ଼ି ଚାଲିଯିବାଟା ଭୁଲ ହେଲା ।" ଅଜା ଆମର ସେମାନଙ୍କୁ କହି ଟିକଏ ନୀରବ ରହିଲେ । ତାପରେ କହିଲେ—"ବର୍ତ୍ତମାନ ଆଉ କଅଣ କରାଯାଇ ପାରିବ । ମା ତ ତୁମର ମରିଗଲା ଦେଖିଲ, ଶ୍ମଶାନରେ ପୋଡି ଦେଇ କି ପୋଡ଼ି ଦେଇ ଯାଇଥିଲେ, ଅବଶ୍ୟ ମନରେ ତୁମର ଅବଶୋଷ ନଥାନ୍ତା । କଅଣ କରାଯାଏ, ମୁଁ କହୁଛି ତୁମେ ଫେରିଯାଅ । ଗାଁ ଲୋକଙ୍କୁ କହିବ ମା ଡାକ୍ତରଖାନାରେ ମରିଗଲା ସଂସ୍କାର କରି ଦେଇ ଆସିଲୁ ।"

"ତେବେ ଆଉ ମାର ଶବ ମିଳିବନି ବୁଢ଼ା ?" ଦୁଇଜଣଙ୍କ ଭିତରୁ ଜଣେ ଅତି ବିମର୍ଷ, ବିକଳ, ଆତୁର କଣ୍ଠରେ ପଚାରିଲେ ।

ଅଜା ଦୃଢ଼ସ୍ୱରରେ ରୋକଠୋକ ଭାବରେ ମନା କରିଦେଲେ—ନାଁ ! ତୁମେ ତ ଚାରିଦିନ ହେଲା ମାଙ୍କୁ ଆଣି ଡାକ୍ତରଖାନାରେ ରଖି ଚିକିତ୍ସା କରୁଥିଲ । ନିଜେ ତ ଦେଖିଛ କେତେ ବଡ଼ ଜାଗା; ଆଉ ଡାକ୍ତର, ନର୍ସ, ପ୍ରଫେସର, ଛାତ୍ର ଛାତ୍ରୀ, ମେହେନ୍ତର, ବେହେରା ଅନ୍ୟାନ୍ୟ କର୍ମଚାରୀ ମିଶି କେତେ ଲୋକ କାମ କରୁଛନ୍ତି । ମୁଁ ସେଠାକୁ ଯାଇ ତୁମମାନଙ୍କର ଶବକୁ କେଉଁଠି ଖୋଜିବି, କାହାକୁ ବା ପଚାରିବି ।"

ଲୋକ ଦୁଇଟି କରୁଣାରେ ଦୀର୍ଘ ନିଃଶ୍ୱାସ ପକାଇ ଅଜାଙ୍କଠାରୁ ବିଦାୟ ନେଲେ ।

ମୁଁ ଏତେ ସମୟ ଧରି ଦୁଆର ମୁହଁରେ ଠିଆ ହୋଇ ଅଜା ଆଉ ଲୋକ ଦୁଇଜଣଙ୍କର କଥା ଶୁଣୁଥିଲି । ସେମାନଙ୍କ କଥାବାର୍ତ୍ତାରୁ ଯାହା ବୁଝିଲି—ସେ ଲୋକ ଦୁଇଜଣ ଦୁଇଭାଇ । ଅଜାଙ୍କ ଗାଁର ଲୋକ । ଗାଁରେ ମା ଦେହ ଭଲ ନ ହେବାରୁ

ବଡ଼ ଡାକ୍ତରଖାନାକୁ ଚିକିତ୍ସା ପାଇଁ ଆଣିଥିଲେ । ମା'ଙ୍କୁ ତାଙ୍କର ବୟସ ହୋଇ ଯାଇଥିଲା, ଚାରିଦିନ ଚିକିତ୍ସା ପରେ ଗତ ରାତିରେ ମରିଗଲେ । ମା ତାଙ୍କର ମରିଯିବା ପରେ ସେ ଖଟିଆଟିକୁ ଡାକ୍ତରଖାନା କର୍ମଚାରୀମାନେ ଓ୍ୱାର୍ଡ ବାରଣ୍ଡାକୁ ଆଣି ତା ଚାରିପାଖେ କନା ପର୍ଦ୍ଦା ଆଡ଼ୁଆଳ ଦେଇ ରଖିଥିଲେ । କେହି ଜଣେ ନର୍ସ ଏ ଦୁଇ ଜଣଙ୍କୁ କହିଲେ —"ଶୀଘ୍ର ମୁର୍ଦ୍ଦାରକୁ ଏଠାରୁ ଉଠାଇ ନେଇ ଖଟିଆ ଖାଲି କରିଦିଅ । ନଚେତ୍ ମେହେନ୍ତର ଫୋପାଡ଼ ଦେଇ ଆସିବ ।" ଲୋକ ଦୁଇଜଣଙ୍କ ଘରତ ମଫସଲରେ । ତାପରେ ଶିକ୍ଷା ଦୀକ୍ଷା, ବୁଦ୍ଧି ବିବେକ ଟିକିଏ କମ୍ ଥିଲା ପରି ସେମାନଙ୍କ ମୁହଁରୁ ଜଣାପଡୁ଼ ଥିଲା । ଦୁଇଜଣ ଯାକ ଶବକୁ ଖଟିଆରୁ ତଳକୁ ବାହାର କରି ଆଣି, ସେହି ବାରଣ୍ଡାରେ ଗୋଟିଏ କୋଣରେ ଘୋଡାଇ ଦେଇ ସହରରେ ଥିବା ଗାଁର ଅନ୍ୟାନ୍ୟ ଲୋକଙ୍କୁ ସକାଳୁ ସକାଳୁ ଡାକିବାକୁ ଯାଇଥିଲେ । ଦୁଇ ତିନ ଘଣ୍ଟା ପରେ ଆସି ଦେଖିଲେ ଯେଉଁଠି ଶବ ରଖିଥିଲେ ସେଠାରେ ନାହିଁ । ଯେତେ ଖୋଜିଲେ ମଧ୍ୟ ପାଉ ନାହାନ୍ତି ।

ଅଜୟ ପଚାରିଲା—"ତେବେ କିଏ ସେ ମୁର୍ଦ୍ଦାରକୁ କେହି ଚୋରାଇ ନେଇଗଲା ?"

"କିଏ କହିବ ତା ? ତଥାପି କହୁଛୁ ଶୁଣ ! କେମିତି ମଜା ହେଲା ।" ବ୍ରାନାମ୍ବର ଏତା କହି ପୁଣି ଆରମ୍ଭ କଲା—ଅଜା ଆମର ମୁନିସିପାଲଟିର ଜଣେ ପୁରୁଣା ଅତି ଜଣାଶୁଣା କର୍ମଚାରୀ । ତେଣୁ ସେମାନେ ଅଜାଙ୍କ ପାଖକୁ ଗାଁ ଲୋକ ବୋଲି ଆସିଥିଲେ । ସେମାନେ ଭାବିଥିଲେ କାଳେ ସେ ଚେଷ୍ଟା କଲେ ତାଙ୍କ ମା'ଙ୍କ ଶବ ମିଳିଯିବ । ମାତ୍ର ଅଜା ତ ମନା କରିଦେଲେ । ସେମାନେ ଚାଲିଗଲେ, ଅଜାଙ୍କର ଆଉ କେଉଁଥିରେ ମନ ଭଲ ଲାଗିଲା ନାହିଁ । ଖାଇଲେ ନାହିଁ ଆଈ ଖାଇବାକୁ ଭାତ ବାଢ଼ି ଏଣେ ଡାକୁଛନ୍ତି, ସେ ସାଇକେଲ ଧରି ଅଫିସକୁ ଚାଲିଗଲେ ।

ଆଈ ମତେ ଦେଖେଇ କହିଲେ—"ଦେଖିଲୁ, ସକାଳୁ ଯଦି ଅଜା ତୋର କାହା ଉପରେ ଚିଡ଼ିଲେକ, କୌଣସି କାରଣରୁ ତାଙ୍କ ମୁଣ୍ଡ ଟିକିଏ ବିଗିଡ଼ିଗଲା, ତେବେ ନ ଖାଇ ନ ପିଇ ସାଇକେଲ୍ ଠଙ୍ଗ ଠାଙ୍ଗ ହୋଇ ଅଫିସକୁ ଚାଲିଲେ । ତୁମେ ଏଣେ ଘରେ କୋଡ଼ କଚାଡ଼ ହେଉଥା, ମରୁଥା, କିଏ ଶୁଣୁଛି ?"

ମୁଁ କହିଲି—"ଅଜାଙ୍କ ପାଇଁ ଟିଫିନ କ୍ୟାରିଅରରେ ଭାତ ନେଇ ଦେଇ ଆସିଲେ ହୁଅନ୍ତା ।"

ଆଈ ମୋ ପ୍ରସ୍ତାବ ଶୁଣି ଭାରି ଖୁସି ହୋଇଗଲେ । କହିଲେ—'ଭୁ ଯିବୁ', ମୋ ଆଡ଼େ ଟିକିଏ ଚେଇଁ କରି କହିଲେ—"ମୁଁ ମରିଯାଉ ଥାଏରେ । ମୋ ନାତି କେତେ କାମ ମୋର କରି ଦବରେ ।"

ତୋ ଅଜା, ଆଈ ତୋତେ ଭାରି ଭଲ ପାଆନ୍ତି—ନୁହେଁ ? ଅବନାଶ ପଚାରିଲା । ଏକଥା ଶୁଣି ଆସରରେ ଅନ୍ୟ ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ ।

ବାନାମ୍ବର କହିଲା—ସମସ୍ତଙ୍କ ଅଜା ଆଈ ତାଙ୍କ ନାତି ନାତୁଣୀଙ୍କୁ ଭଲପାଆନ୍ତି । ମୋର କଅଣ, ତୋ'ର କଅଣ ।

ଅଜୟ ଚଡ଼ଉଠି କହିଲା—"ଜଣେ କଥା କହିବାବେଳେ ଅନ୍ୟ ଜଣେ ସେଥିରେ ବାଧାଦେଲେ ଭାରି ବିରକ୍ତ ଲାଗେ ।"

ଅବନାଶ ନିଜକୁ ଦୋଷୀ ମନେକଲା । ସେ କଥାଟାକୁ ଟିକିଏ ହାଲକା କରି ଦେବାପାଇଁ କହିଲା – "ବାବା ବାନାମ୍ବର, ତୁମେ ପୁଣି କଥା ଆରମ୍ଭ କର ।"

ବାନାମ୍ବର ପୁଣି ଆରମ୍ଭ କଲା—"ଅଜାଙ୍କ ପାଇଁ ଟିଫିନକ୍ୟାରିଅରରେ ଭାତ, ଡାଲି, ତରକାରି, ଖଟା ଭର୍ତ୍ତିକରି ତାଙ୍କ ଅଫିସକୁ ଗଲି । ଯିବା ପୂର୍ବରୁ ମୋତେ ଆଈ ବସି ବସି ପେଟେ ଖୁଆଇ ଥାଆନ୍ତି ।

ଅଜାଙ୍କ ଅଫିସରେ ସେଦିନ ଥାଏ ଖାଉଁଦାରମାନଙ୍କ ଦରମା ଦେବା ତାରିଖ । ଅଜା କର୍ମଚାରୀମାନଙ୍କୁ ଟଙ୍କା ଦେବାରେ ବ୍ୟସ୍ତଥାନ୍ତି । ମୋତେ ଦେଖି କହିଲେ—"ମୋ ପଛରେ ଟିଫିନ-କ୍ୟାରିଅରଟି ରଖି ଦେ । ବସ ।"

ମୁଁ ତାଙ୍କ ପାଖରେ ପଡ଼ିଥିବା ଚୌକି ଦୁଇଟି ଭିତରୁ ଗୋଟିକରେ ବସିଲି । ଏହି ସମୟରେ ଜଣେ ଲୋକ ମଟର ସାଇକେଲରେ ଆସି ଅଜାଙ୍କ ଅଫିସ ଆଗରେ ଗାଡ଼ିଟି ରଖି ଅଫିସ ଭିତରକୁ ପଶି ଆସିଲେ । ମୁଁ ତାଙ୍କୁ ଦେଖି କୌଣସି ବଡ଼ ଅଫିସର କମ୍ବା ବଶିଷ୍ଟ ଲୋକ ହୋଇ-ଥିବେ ବୋଲି ଉଠି ଠିଆ ହୋଇଗଲି । କାରଣ ସେ ଅତି ମୂଲ୍ୟବାନ ଜରିର ଜାମା, ଫୁଲ ପ୍ୟାଣ୍ଟ ପିନ୍ଧିଥିଲେ । ଆଖିରେ ଥିଲା ସୁନାଫ୍ରେମର ଚଷମା । ହାତର ଦଶ ଆଙ୍ଗୁଠିରେ ଦଶଟି ସୁନାମୁଦି,

ବେକରେ ଦୁଇ ଅଢ଼େଇଭରି ଓଜନର ସୁନା ଚେନ । ଗୋଡ଼ରେ ମୋଜା ଓ ସୁଦ୍ଧ ଯୋତା । ତାଙ୍କ ଦେହରୁ ବାସନାତେଲ ଓ ପାଉଡରର ଗନ୍ଧ ସେ ପରିବେଶକୁ ବେଶ ସୁବାସିତ କରୁଥିଲା ।

ଅଜା ମତେ ଠିଆହେବା ଦେଖି କହିଲେ – "ତୁ ବସୁନୁ, ତୁ କାହିଁକି ଠିଆ ହେଲୁ ?"

ମୁଁ ବସି ସେହି ଭଦ୍ରଲୋକଙ୍କ ମୁହଁକୁ ଚାହିଁ ରହିଲି ।

ଅଜା ପ୍ରଥମେ ପ୍ରଥମେ ସେ ଲୋକଟିକୁ ଦେଖି ଡରିଗଲେ । କାରଣ ସେ ଭାବିଲେ ଆଜି ଦରମା ଦେବା ତାରିଖ । ତାଙ୍କ ପାଖରେ ପ୍ରାୟ ତିରିଶହଜାର ପର୍ଯ୍ୟନ୍ତ ନଗଦ ଟଙ୍କା ଅଛି । ଲୋକଟି କୌଣସି ଚୋର କି ଡକାୟତ ହୋଇଥିବ, ତାଙ୍କଠାରୁ ଯଦି ଟଙ୍କାତକ ଛଡ଼ାଇ ନେବ, ତେବେ ସେ କରିବେ କ'ଣ ? ତଥାପି ତାଙ୍କ ଅଫିସ ଘରେ ଓ ବାହାରେ ବହୁତ ଝାଡୁଦାର ଦରମାପାଇଁ ଠିଆ ହୋଇଥିବାରୁ ତାଙ୍କ ମନରେ ଖୁବ୍ ସାହସ ଥାଏ । ସେ କ୍ୟାସ ବାକ୍ସଟିକୁ ବନ୍ଦକରି ଭଦ୍ରଲୋକଙ୍କ ଉଦ୍ଦେଶ୍ୟରେ କହିଲେ—"ମୋ ପାଖରେ କ'ଣ କାମ ଥିଲା ? ବସନ୍ତୁ ।" ଆଗରେ ଖାଲିଥିବା ଚୌକିଟି ଦେଖାଇ ଦେଲେ ।

ମାତ୍ର ଭଦ୍ରଲୋକ ଜଣକୁ ଅଜା ବସିବାପାଇଁ ଯେତେ କହିଲେ ମଧ୍ୟ ସେ ଚୌକିରେ ଆଦୌ ବସିଲେ ନାହିଁ । ତଥାପି ଅଜା ତାଙ୍କୁ ଅତି ବିନମ୍ର ଗଳାରେ କହିଲେ—"କୁଆଡ଼େ ଆସିଥିଲେ, କହୁ ନାହାନ୍ତି ?"

ଭଦ୍ରଲୋକ ଜଣଙ୍କ କହିଲେ – "ଦରମା ନବାକୁ ଆସିଥିଲି ।"

"ଦରମା" ? ଅଜା ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁଲେ ।

ପାଖରେ ଠିଆ ହୋଇଥିବା ଅନ୍ୟ ଝାଡୁଦାରମାନେ ହସି ଉଠିଲେ । କହିଲେ "ବାବୁ, ଆପଣ ହରିଆକୁ ଚିହ୍ନି ପାରୁନାହାନ୍ତି ?"

"ହରିଆ ?" ଅଜା ବିସ୍ମୟ ହୋଇ ପଚାରିଲେ ।

ଅନ୍ୟ ଜଣେ ଝାଡୁଦାର ସନାତନ କହିଲେ—"ହରିଆ ମ । ଆମ ପାଞ୍ଚନମ୍ବର ଓ୍ୱାର୍ଡ ଝାଡୁଦାର ।

ଅଜାଙ୍କର ହରିଆ ଝାଡୁଦାରଙ୍କ କଥା ମନେ ପଡ଼ିଲା । ବାପ ମାଆ ଥିବା ପର୍ଯ୍ୟନ୍ତ ପିଲଟା ବେପରବାୟ ଭାବରେ ବୁଲୁଥିଲା । ବାହା ସାହା ହେଲା । ପିଲାଛୁଆ ହେଲେ । ତଥାପି ସେ ଓ ତା ପିଲାମାନେ କପରି ଚଳିବେ ସେଥିକୁ ତାର ଖାତିର ନଥିଲା । ବାପା; ମା ଦୁଇଜଣ ଯାକ ମ୍ୟୁନିସିପାଲିଟିରେ ଝାଡୁଦାର କାମ କରୁଥିଲେ । ସେହି ରୋଜଗାରରେ ହରିଆ ଓ ତା ପିଲାମାନଙ୍କ ସହିତ ସମସ୍ତ ପରିବାରଟି ଖୁସିରେ ଚଳି ଯାଉଥିଲେ । ହରିଆ ତା ବାପା ମାଙ୍କର ଗୋଟିଏ ପୁଅ ବୋଲି ମେହନତ କରିବାପାଇଁ ତା ଉପରେ କେହି ଯୋର ଦେଉ ନଥିଲେ । ମାତ୍ର ବାପା ମା ମରିଯିବା ପରେ ହରିଆ ଅଭାବଟା କଅଣ ବୁଝିଲା । ଘରେ ତା'ର ପିଲାମାନେ ଖାଇବାକୁ ନ ପାଇବାରୁ ଏତେଦିନଯାଏ ଦାୟିତ୍ୱହୀନ ଭାବରେ ମଉଜ ମଜଲିସି ବୁଲି, ସିନେମା ଦେଖାରେ ଯେଉଁ ସମୟତକ କଟାଇ ଦେଇଥିଲା, ତାର ପରିଣତି ଅନୁଭବ କଲା । ଅତି ଅଭାବରେ ପଡ଼ିବାରୁ ଦିନେ ଆସି ଅଜାଙ୍କ ପାଖେ ଭାରି କାନ୍ଦିଲା । ଅଜା ତାକୁ ପାଞ୍ଚଟି ଟଙ୍କା ଚାଉଳ କିଣିବାକୁ ସାହାଯ୍ୟ ଦେଇଥିଲେ ଏବଂ ଦୁଇଦିନ ପରେ ତା ବାପା ଜାଗାରେ ଝାଡୁଦାର କାମରେ ହରିଆକୁ ରଖାଇ ଦେଇଥିଲେ ।

ଆଜି ପର୍ଯ୍ୟନ୍ତ ହରିଆ ସେହି ଝାଡୁଦାର କାମରେ ଅଛି । ପ୍ରତି ମାସରେ ସେ ଦରମାପାଇଁ ଆସେ । ମାତ୍ର ଆଜି ତା ବେଶ ପୋଷାକରେ ହଠାତ୍ ପରିବର୍ତ୍ତନ ଦେଖି ଅଜାଙ୍କୁ ବିଶେଷ ଆଶ୍ଚର୍ଯ୍ୟ ଲାଗିଲା ।

ଅଜା ପଚାରିଲେ—"ତୁ ହରିଆ ?"

ହରିଆକୁ ଲାଜ ମାଡ଼ିଲା ନା କଅଣ, ସେ "ଆଜ୍ଞା" ବୋଲି କହି ଅଫିସ ଘର ଛାଡ଼ି ବାହାରକୁ ଚାଲିଗଲେ ।

ଅଜା ଅନ୍ୟ ଝାଡୁଦାରମାନଙ୍କ ଉଦ୍ଦେଶ୍ୟରେ ପଚାରିଲେ – "ହରିଆ ତ ଆଉ ଝାଡୁଦାର ଭଳି ଦିଶୁନାହିଁ । ତା ବେଶ ପୋଷାକ, ମଟର ସାଇକେଲ, ସୁନାମୁଦି, ସୁନାଚେନରୁ ଯାହା ଜଣାପଡୁଛି, ସେ ବେଶ ଦୁଇପଇସା ରୋଜଗାର କରୁଛି ।"

ଝାଡୁଦାର ସନାତନ କହିଲେ—"ଆମ ହରିଆ ହୋଇ ସେ ଆଉ ନାହିଁ ବାବୁ । ସେ ସିନା ଆମ ମ୍ୟୁନିସପାଲିଟି ଅଫିସରେ ହରିଆ । ମାତ୍ର ତା ଘରେ ଆଉ ବାହାରେ ହରିହର ବାବୁ ।

"ମାନେ ?" ଅଜା ଲୋକଙ୍କୁ ଦରମା ଦେବେ କଅଣ ? ସନାତନଙ୍କ ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ।

ସନାତନ କହିଲେ – "ବାବୁ, ସେ ମୁର୍ଦ୍ଦାର ବ୍ୟବସାୟ କରୁଛୁ ।"

"ମୁର୍ଦ୍ଦାର ବ୍ୟବସାୟ ?" ଅଜା ଓ ମୋ ପାଟିରୁ ପ୍ରଶ୍ନଟି ଏକାବେଳକେ ବାହାରି ଆସିଲା । ମୁଁ ମନେ ମନେ ଭାବିଲି—ଲୋକେ ଲୁଗା ବ୍ୟବସାୟ କରନ୍ତି, ଚାଉଳ, ଡାଲି, ତେଲ, ଲୁଣ ପ୍ରଭୃତି ଖାଇବା ଜିନିଷ ବ୍ୟବସାୟ କରନ୍ତି, ପଥରତରବା ବ୍ୟବସାୟ କରନ୍ତି, ସିମେଣ୍ଟ, ଲୁହାଛଡ଼, ବିଭିନ୍ନ ପ୍ରକାର ଶିଳ୍ପଜାତ ଦ୍ରବ୍ୟ, ଖଣିଜ ଦ୍ରବ୍ୟ ବ୍ୟବସାୟ କରନ୍ତି, ମାତ୍ର କେହି ତ ମୁର୍ଦ୍ଦାର ବ୍ୟବସାୟ କରିବାର କେବେ ଶୁଣାନାହିଁ । ସନାତନ ଥଟ୍ଟା କରୁଛୁ ନା କଅଣ ? ମୁଁ ଓ ଅଜା ତାଙ୍କ ମୁହଁକୁ ଚାହିଁ ରହିଲୁ ।

ଅଜା ପଚାରିଲେ—"ମୁର୍ଦ୍ଦାର ବ୍ୟବସାୟ କଅଣ ?"

ଅନ୍ୟ ଝାଡ଼ୁଦାରମାନେ କହିଲେ – "ସନା, ବାବୁଙ୍କୁ ହରିଆ କିପରି ମୁର୍ଦ୍ଦାର ବ୍ୟବସାୟ କରୁଛୁ କହି ଦେ ।"

ହରିଆ ସେତେବେଳକୁ ଯାଇ ପାଖରେ ଥିବା ଆମ୍ବଗଛ ମୂଳେ ବସିଥିଲେ ।

ସନାତନ କହିଲେ – ବାବୁ, ଡାକ୍ତରଖାନା, ରାସ୍ତା ଘାଟରେ ପଡ଼ି ଯେଉଁ ନିରାଶ୍ରୟ ଲୋକ ମରିଯାଆନ୍ତି ଡାକ୍ତରଖାନା ମେହେନ୍ତର କିମ୍ବା ଆମ ଝାଡ଼ୁଦାରମାନେ ତାକୁ ନେଇ ଦୂରରେ ଫୋପାଡ଼ି ଦେଇ ଆସନ୍ତି । ମାତ୍ର ହରିଆ ନିଜର ଲୋକ ରଖି ସେହି ମୁର୍ଦ୍ଦାରଗୁଡ଼ିକୁ ସଂଗ୍ରହ କରେ ।

'ସେ ମୁର୍ଦ୍ଦାରକୁ ସେ କରେ କଅଣ ?' ଅଜା ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ । ମୁଁ ମଧ୍ୟ ଝାଡ଼ୁ ଝୁଡ଼ି ହୋଇ ବସି ତାଙ୍କ କଥାକୁ ଶୁଣିବାପାଇଁ କାନ ଡେରି ବସିଲି ।

ସନାତନ କହିଲେ—"ସେ ମୁର୍ଦ୍ଦାରଗୁଡ଼ିକ ଖାଟଖୋଳା, ଲୁଣଦେଇ ପୋତିଦିଏ । ମୁର୍ଦ୍ଦାର ଦେହର ମାଂସଗୁଡ଼ିକ ସଡ଼ିଗଲେ ତା'ର ହାଡ଼ଗୁଡ଼ିକ ବାହାର କରି ଗରମ ପାଣିରେ ଭଲ ଭାବରେ ପରିଷ୍କାର କରେ । ମଲା ମଣିଷର ଗୋଟିଏ ଗୋଟିଏ କଙ୍କାଳକୁ ସେ କେତେ କରି ବିକେ ଜାଣନ୍ତି ବାବୁ ? ଛଅଶହ ସାତଶହ ଟଙ୍କାରେ ।"

ଅଜା ପଚାରିଲେ—"ମଣିଷ କଙ୍କାଳକୁ କିଏ କିଣେ ?

ସନାତନ କହିଲେ—କାହିଁକି ? ଡାକ୍ତରୀ ପଢୁଥିବା ଛାତ୍ର ଛାତ୍ରୀ, ବଡ଼ ବଡ଼ ଡାକ୍ତରଖାନା, ଗବେଷଣାଗାର, ଏପରିକି ଡାକ୍ତର, ଗବେଷକମାନେ କିଣି ନିଅନ୍ତି । ଦିନରାତି ଦୁଆରେ ଲାଗି ରହିଲେ କେତେ ବଡ ବଡ଼ ଡାକ୍ତର, ଅଫିସର, ଛାତ୍ର ଛାତ୍ରୀଙ୍କ ମଟର, ସ୍କୁଟର, ରିକ୍ସା, ସାଇକେଲ ଆସି ଜମା ହୁଏ, ଆପଣ ତାହା ଦେଖିଲେ ଆଶ୍ଚର୍ଯ୍ୟ ହୋଇଯିବେ ।

"ଏତେ ଲୋକ ମଣିଷ କଙ୍କାଳ ନେବାକୁ ଆସନ୍ତି ?" ଅଜା ସନାତନ ମୁହଁକୁ ଚାହିଁ ପଚାରିଲେ ।

ଅନ୍ୟ ଖାଉଦାରମାନେ କହିଲେ—"ହଁ ବାବୁ, ତା ପାଖରେ ଏତେ ବରାଦ ଯେ, ସେ ସବୁ ଯୋଗାଇ ପାରେନା । ସେ ମୁର୍ଦ୍ଦାର ସଂଗ୍ରହ ପାଇଁ କମ ଲୋକ ରଖିଛି କି ?"

ଅଜା ପଚାରିଲେ—"ଲୋକ ସବୁ କଅଣ କରନ୍ତି ?"

ସନାତନ କହିଲେ – ସେ ସବୁ ଲୋକ ଅଖା ବସ୍ତାଟିଏ ଜେଖାଏଁ ଧରି ଶ୍ମଶାନ, ଡାକ୍ତରଖାନା, ଏବଂ ଯେଉଁଠି ମୁର୍ଦ୍ଦାର ପଡ଼ିଥିବାର ସମ୍ଭାବନା ଥାଏ ସେ ସବୁ ଜାଗାରେ ବୁଲୁଥାନ୍ତି । ବହୁ ଲୋକ ତାଙ୍କ ଆତ୍ମୀୟ ଲୋକ ମରିଗଲେ ପରେ ନିଶ୍ଚକୁଳ, କନ୍ତୁ ଶ୍ମଶାନ ଘାଟରେ ପୋତି ଦେଇଯାଆନ୍ତି । ସେମାନେ ଯିବା ପରେ ପରେ ଦିନଆର ଲୋକ ଯାଇ ତାକୁ ଖୋଳି ନେଇ ଆସନ୍ତି । ଡାକ୍ତରଖାନାରେ ମଧ୍ୟ ଅସହାୟ ଲୋକଙ୍କ ଶବ ବାରଣ୍ଡାରେ ପଡ଼ିଥିଲେ କମ୍ପା ଡାକ୍ତରଖାନା ମେହେନ୍ତର ନେଇ ବାହାରେ ଫୋପାଡ଼ି ଦେବାକୁ ଯାଉଥିଲେ, ତାକୁ ପାଞ୍ଚଦଶ ଟଙ୍କା ଦେଇ ତାଠାରୁ ନେଇ ଆସନ୍ତି ।

ଏ ମୁର୍ଦ୍ଦାର ଆଣନ୍ତି କିମିତି ? ମୁଁ ସନାତନଙ୍କୁ ପଚାରିଲି ।

ଆମେ ସବୁ ଜିନଷପତ୍ର ଆଣିଲା ପରି ସେମାନେ ଅଖାରେ ପୂରାଇ କେହି ସାଇକେଲ ପଛରେ ଲଦି, କେହି ରିକ୍ସାରେ ଥୋଇ, କେହି ବା କାନ୍ଧରେ ପକାଇ ନେଇ ଆସନ୍ତି – "ସନାତନ କହିଲେ ।

"ଯେଉଁ ଲୋକ ମୁର୍ଦ୍ଦାର ଆଣନ୍ତି ତାଙ୍କୁ ଭୟ ଲାଗେନା" ?—ମୁଁ ପଚାରିଲି ।

ସନାତନ କହିଲେ—"ଡର, ଭୟ କଅଣ ମ ବାବୁ ! ଜନ୍ତା, ପିମ୍ପୁଡ଼ିଠାରୁ ଗୋରୁ ଗାଈ, ହାତୀ ଘୋଡ଼ା ପର୍ଯ୍ୟନ୍ତ ମରୁଛନ୍ତି । ଆମେ ତ ପୁଣି ମେଣ୍ଢା, ଛେଳି, ଘୁଷୁରି, ମିରିଗ,

ଧମ୍ୱରକୁ ମାରି ତାଙ୍କ ମାଂସ ଖାଉଛନ୍ତି । ଆମକୁ ଆଉ ଡର ଲାଗୁନି ? ମଣିଷ ଯାହା, ସେମାନେ ମଧ୍ୟ ସେୟା ଏକା ଜୀବନ ସବୁରି । ବରଂ ବଞ୍ଚିବା ମଣିଷ, ଜୀବଜନ୍ତୁଙ୍କୁ ଡର । କେତେ-ବେଳେ କିଏ ଆକ୍ରମଣ କରିବ । ବଞ୍ଚିଥିବା ଚୋର, ଡକାୟତ, ବାଘ, ଭାଲୁ, ସିଂହଙ୍କୁ ତ ଅଧିକ ଡର । ମାତ୍ର ମଲାପରେ ଆଉ ତାଙ୍କର କରାମତି କଅଣ । କାଠ, ପଥର ଯାହା, ସେମାନେ ମଧ୍ୟ ସେୟା ସେ ତ ଆଉ ଉଠି ଆମକୁ ଖାଇ ଯାଉନାହାନ୍ତି କି ମାରିବାକୁ ଛୁରି, ଫାଶୀ ଦେଖାଉ ନାହାନ୍ତି !

ଅନ୍ୟ ଜଣେ ଝାଡୁଦାର କହିଲେ—"ହରିଆକୁ ମଲା ମଣିଷ ଏକ ବଡ଼ଲୋକ ମଣିଷ ହୋଇ ଗଲେଣି ବାବୁ ! ଗୋଟେ ମୁର୍ଦ୍ଦାର ଆଣି ହରିଆ ଦୁଆରେ ପହଞ୍ଚାଇ ଦେଲେ ହରିଆ ଆଖିବୁଜା ପଚାଶଟଙ୍କା ଗଣିଦିଏ । ଇମିତି ଦିନ ଅଛି, ଗୋଟେ ଗୋଟେ ଲୋକ ଚାରିପାଞ୍ଚଟା ମୁର୍ଦ୍ଦାର ଆଣି ପହଞ୍ଚାଇ ଦେଇ ଦୁଇଶହ ଅଢ଼ାଇଶହ ଟଙ୍କା ପର୍ଯ୍ୟନ୍ତ ରୋଜଗାର କରିଛନ୍ତି ।

'ଆଶ୍ଚର୍ଯ୍ୟ !' ଅଜା ଦରମା ବହି ଆଡ଼କୁ ପୁଣି ମୁହଁ ଫେରାଇ କହିଲେ ସନାତନ, ତୁମେ ଆଉ ହରିଆ ପଛରେ ଦରମା ନେବ । କାରଣ ମୁଁ ତୁମ ସାଙ୍ଗରେ ଯିବି, ହରିଆର ମୁର୍ଦ୍ଦାର କାରଖାନା ଦେଖିବି ।"

ଆପଣ ସେ ଗନ୍ଧ ଅସନା ଜାଗାକୁ ଯିବେ ବାବୁ ? ସନାତନ ଏବଂ ଅନ୍ୟ ଝାଡୁଦାରମାନେ ଅଜାଙ୍କୁ ପଚାରିଲେ ।

ଏହି ସମୟରେ ଅଜାଙ୍କ ଗାଁର ସକାଳେ ଘରକୁ ଆସିଥିବା ଲୋକ ଦୁଇଟି ପୁଣି ଆସି ଅଫିସରେ ପହଞ୍ଚିଲେ । ଅଜାଙ୍କୁ କହିଲେ—ଆମେ ଗାଁକୁ ଫେରିଯାଉଛୁ ବାବୁ ! ଆପଣଙ୍କ ଘରୁ ଫେରି ପୁଣି ଡାକ୍ତରଖାନାକୁ ଗଲୁ । ସେଠାରେ ପୁଣି ମାର ଶବକୁ ଖୋଜିଲୁ । ପାଇଲୁନି । କଅଣ କରିବୁ—ଆମ ଦୁର୍ଭାଗ୍ୟ । ଆମ ହାତରୁ ଅଗ୍ନି ଟିକିଏ ପଇବାର ଯୋଗ ନାହିଁ ।"

ସେମାନେ କହୁଥାନ୍ତି, ଏଣେ କାନ୍ଦୁଥାନ୍ତି । ଅଜା କହିଲେ—"ଆଚ୍ଛା ହଉ, ତୁମେ ଟିକିଏ ବାହାରେ ବସ । ମୋର କାମ ଶେଷ ହେଉ । ବୁଝିବା ।"

ସେମାନେ ଯାଇ ଅଫିସ ବାରଣ୍ଡାରେ ବସିଲେ । ମୁଁ ମନେ ମନେ ଭାବୁଥାଏ, କାଳେ ଯଦି ହରିଆର ଲୋକ ବୁଢ଼ୀର ଶବକୁ ନେଇ ପଳାଇ ଆସିଥିବେ ।

ଅଜା ସବୁ ଝାଡ଼ୁଦାରଙ୍କୁ ସେମାନଙ୍କର ଦରମା ଦେଇ ବିଦାୟ କଲେ । ହରିଆ ଓ ସନାତନଙ୍କୁ ଦରମା ଦେବାପରେ କହିଲେ—"ମୁଁ ହରିଆ ଘରକୁ ଯିବାର କାରଣ ହେଉଛି ବାହାରେ ଯେଉଁ ଲୋକ ଦୁଇଜଣ ବସିଛନ୍ତି, ତାଙ୍କ ମା କାଲି ରାତିରେ ଡାକ୍ତରଖାନାରେ ମରିଗଲେ । ଆଜି ସକାଳେ ଏମାନେ ଶବକୁ ଖଟିଆରୁ ବାହାର କରି ଡାକ୍ତରଖାନା ବାରଣ୍ଡାରେ ଗୋଟିଏ କୋଣରେ ରଖିଦେଇ ଲୋକ ଡାକିବାକୁ ଯାଇଥିଲେ । ଆସି ଦେଖନ୍ତି ତ ମୁର୍ଦ୍ଦାରଟି ନାହିଁ ।"

ସନାତନ ସେ ଲୋକ ଦୁଇଟିଙ୍କୁ ଡାକି ପଚାରିଲେ—"କେତେବେଳେ ମୁର୍ଦ୍ଦାର ଡାକ୍ତରଖାନା ବାରଣ୍ଡାରେ ରଖିଥିଲେ ?

ଲୋକ ଦୁଇଟି ଏକାବେଳକେ କହି ଉଠିଲେ—'ସକାଳେ' ।

ହରିଆ କହିଲା—"କାଲେ କିଏ ନେଇ ଆସିଥିବେ । ଅସମ୍ଭବ ନୁହେଁ ।"

ମୁଁ, ଅଜା, ହରିଆ, ସନାତନ ଏବଂ ଲୋକ ଦୁଇଟି ହରିଆ ଘରକୁ ଗଲୁ । ମୁଁ ଦେଖିଲି ହରିଆର ଏକ ଦୋତାଲା କୋଠା । ବୈଠକଖାନାରେ ସୋଫାସେଟ ପଡ଼ିଛି । ତଳ ମୋଜାଇକ ହୋଇଛି । ଆମକୁ ହରିଆ ଗୁଡ଼ ଜଳଖିଆ ଖାଇବାକୁ ଯାଚିଲା । ମାତ୍ର ଅଜେ ମନାକଲୁ, ସେ ଆମକୁ ତାଙ୍କ ଘର ପଛକୁ ନେଇଗଲା । ଘର ପଛରେ ଏକ ବଡ଼ପଟ ପଡ଼ିଆ । ଚାରିଜଣ ଲୋକ କାମ କରୁଥାନ୍ତି । ଦୁଇଜଣ ଲୋକ ଗାତ ଖୋଳୁଥାଅନ୍ତି । ଆଉ ଦୁଇଜଣ ଲୋକ କଡ଼ାଇଁରେ ମଣିଷର ହାଡ଼ଗୁଡ଼ିକ ସିଝାଉଥାଆନ୍ତି । କି ଗନ୍ଧ ! ମୁଁ ନାକରେ ରୁମାଲ ନ ଦେଇ ରହିପାରିଲି ନ ?

ଅବିନାଶ ପଚାରିଲା—"ତେବେ ବାନାମ୍ବର ଡର ମାଡ଼ିଲାନି ?" ବାନାମ୍ବର କହିଲା ଆମେ ଏତେ ଲୋକ ଥାଉ, ଡର କଅଣ ? ତାପରେ ହରିଆ ତା ଲୋକଙ୍କୁ ପଚାରିଲେ—"ଆଜି ସକାଳେ କିଏ ମୁର୍ଦ୍ଦାର ନେଇ ଆସିଥିଲେ କି ?"

"ହଁ ଆଜି ସକାଳୁ ଏ ଛଅଟା ମୁର୍ଦ୍ଦାର ଆସିଛି । ପୁରୁଣା ଗାତ ଖୋଳି କଙ୍କାଳ-ଗୁଡ଼ିକ ବାହାରକରି ସାରିବାପରେ ସେହି ଗାତରେ ଏଗୁଡ଼ାକ ପୋତି ଦେବୁ "—କାମ କରୁଥିବା ଲୋକଙ୍କ ଭିତରୁ ଜଣେ କହିଲେ ।

ମୁଁ ଦେଖିଲି ପଡ଼ିଆର ଗୋଟିଏ ପାଖରେ ଛଅଟି ମୁହାଁବନ୍ଧା ବସ୍ତା ଥୁଆ ହୋଇଛି ।

ହରିଆ ଜଣେ ଲୋକକୁ ପାଖକୁ ଡାକି କହିଲେ—"ଏ ବସ୍ତାଗୁଡ଼ିକୁ ଖୋଲିଲୁ ଦେଖିବା ?"

ଲୋକଟି ଆସି ବସ୍ତାଗୁଡ଼ିକ ଖୋଲିଲା । ଦୁଇ ତିନୋଟି ବସ୍ତା ଖୋଲିବା ପରେ ବୁଢୀର ଶବ ବାହାରିଲା । ଲୋକ ଦୁଇଟି "ମାଆ", "ମାଆ" ବୋଲି ପାଟିକରି ଉଠିଲେ ।

ଅଜା ସେମାନଙ୍କ ଉପରେ ବିରକ୍ତ ହୋଇ କହିଲେ—"ଚୁପ ହୁଅ ।" ହରିଆ ଉଦ୍ଦେଶ୍ୟରେ ପଚାରିଲେ—"ଡାକ୍ତରଖାନାରୁ ଏ ଶବ କିଏ ଆଣିଲା ?"

ହରିଆ ଏହି ପ୍ରଶ୍ନ ତା ଲୋକଙ୍କୁ ପଚାରିବାରୁ ସେମାନଙ୍କ ଭିତରୁ ଜଣେ କହିଲେ "ସକାଳେ ନବା ଆଣିଛି ।"

"ନବା" ହେଉଛି ହରିଆର ମୁର୍ଦ୍ଦାର ଯୋଗାଉଥିବା ଲୋକଙ୍କ ଭିତରୁ ଜଣେ ।

"ଆପଣ କଅଣ ଏ ମୁର୍ଦ୍ଦାରକୁ ନେଇଯିବେ ?"

ହରିଆ ପଚାରି ଅଜାଙ୍କ ମୁହଁକୁ ଚାହିଁ ରହିଲା । ଲୋକ ଦୁଇଟି କହିଲେ—"ହଁ ବାବୁ ଆମ ମା ଶବକୁ ଆମେ ନେଇଯିବୁ ।"

ଅଜା ପଚାରିଲେ—"କେମିତି ନେବ ?"

ସେହି ବସ୍ତା ଭିତରେ ଥାଉ । ବସ୍ତା ସହିତ ଆମେ ଗାଁକୁ ନେଇଯିବୁ । ସେଇଠି ସଂସ୍କାର କରିବୁ ।"

ହରିଆ ପଚାରିଲେ—"ସକାଳେ ନବା ଏ ମୁର୍ଦ୍ଦାର ପାଇଁ ଟଙ୍କା ନେଇଛି ?"

କାମ କରୁଥିବା ଲୋକଙ୍କ ଭିତରୁ ଜଣେ କହିଲେ—"ଆମେ କହି ପାରିବୁନି । ଘରେ ସନ୍ଧ ଦେଇଥିବେ !"

ହରିଆ ଟିକିଏ ଧମକ ଦେଇସାରି କହିଲେ—"ସେ ନବାକୁ କହିବ, ଇମିତି ବଦନାମ କାମ ଆଉ କେବେ କରିବନି । ଡାକ୍ତରଖାନା ବାରଣ୍ଡାରେ ସେମାନେ ମୁର୍ଦ୍ଦାର ରଖି ଲୋକ ଡାକିବାକୁ ଯାଇଛନ୍ତି, ଏ ନେଇପାରୁ ?

ସବୁକଥା ଗୋଟି ଗୋଟି ହୋଇ ଜଣାପଡ଼ିଗଲେ । ଅଜା ଲୋକ ଦୁଇଟିଙ୍କ ଉଦ୍ଦେଶ୍ୟରେ କହିଲେ—"ତୁମ ପାଖରେ ଟଙ୍କା ଅଛି । ପଚିଶଟଙ୍କା ତାଙ୍କୁ ଦିଅ ।"

ମାତ୍ର ଦିହିଆ ଟଙ୍କା ନେବାକୁ ମନାକଲା ।

ଆମେ ସେଠାରୁ ବିଦାୟ ନେଇ ଘରକୁ ଆସିଲୁ । ଲୋକ ଦୁଇଟି ତାଙ୍କ ମାଙ୍କ ଶବକୁ ସେହି ଅଖା ସହିତ ବେକ୍ସାରେ ଲଦି ତାଙ୍କ ଗାଁକୁ ଗଲେ । ଅନେକଦିନ ପର୍ଯ୍ୟନ୍ତ ଅଖାରେ ବନ୍ଧା ହୋଇଥିବା ଶବର ବିକଟାଳିଆ ମୁହଁ ମୋ ଆଖିଆଗରେ ନାଚିଉଠିଲା । ରାତିରେ ଶୋଇଲା ଅବସ୍ଥାରେ ସେହି କଥା ବେଳେ ବେଳେ ମନରେ ଆସି ମୁଁ ଚମକି ପଡ଼େ । ଆଈ ଏସବୁ କଥା ଶୁଣି କେତେ କାହା ପାଖରେ ମୋତେ ଝଡ଼ାଝଡ଼ି କରି ମନ୍ତ୍ରପାଣି ପିଆଇବାରୁ ରାତିରେ ସେ ଭୟ ମୋ ମନରୁ ଗଲା ।

ବାନାମ୍ବର କଥା ଶେଷ ହେଲା । ଆଜିର ଆସର ଭାଙ୍ଗିବାକୁ ବସିଲା । ସମସ୍ତେ ଘଟଣାଟି ଶୁଣିବାପରେ ଆଉକିଛି ନ କହି ନୀରବରେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ଉଠିବାକୁ ଆରମ୍ଭକଲେ । ଅରବିନ୍ଦ ତା ଅଜାଙ୍କ କଥା ଆସନ୍ତାକାଲି କହିବ ବୋଲି ସେହିଠାରେ ଘୋଷଣା କଲା ।



# ଅଜାଙ୍କ ଜନ୍ମାଷ୍ଟମୀ ବ୍ରତ

ସେ ଦିନ ସ୍କୁଲ ଛୁଟି ପରେ ପିଲମାନଙ୍କର ଆସର ବସିଲା । ଅରବିନ୍ଦ ତା ଅଜାଙ୍କ କଥା ଆରମ୍ଭ କଲା —

ଅରବିନ୍ଦ କହିଲା—"ମୋ ଅଜା ଜଣେ ପୁରୁଣାକାଳିଆ ଜମିଦାରବଂଶର ଲୋକ । ଏବେ ମଧ୍ୟ ସେହି ଜମିବାଡ଼ି ବଗିଚାର ଆୟରୁ ଚଳନ୍ତି । ଘରେ ଗୁମାସ୍ତା ରହି ସବୁ କାର୍ଯ୍ୟ ବୁଝା ବୁଝି କରନ୍ତି । ଆଉ ଚାଷବାସ, ଝିଅ ଝିଆଣିଙ୍କ ଯିବା ଆସିବା, ବନ୍ଧୁ ବାନ୍ଧବ, କଥା ବୁଝନ୍ତି । ଅଜା ପ୍ରାୟ ସବୁ ସମୟରେ ସହରରେ ଥିବା ତାଙ୍କ କୋଠାରେ ରହନ୍ତି । ଆଉ କେବଳ କାର୍ତ୍ତିକ ମାସଟି ସେଠାକୁ ଆସି କାର୍ତ୍ତିକ କରନ୍ତି । ଅଜା, ସହରରେ ତାଙ୍କୁ ରୋଷେଇବାସ କରି ଦେବା ସକାଶେ ଜଣେ ପୂଜାରି ରଖିଛନ୍ତି । ସେହି ପୂଜାରିଟି ହେଉଛି ତାଙ୍କର ସବୁ । ସେ ଠାକୁର ବସାନ୍ତି, ବଜାର ସଉଦା ଆଣନ୍ତି, ଘରଦ୍ୱାର ଝାଡ଼ୁ ଦିଅନ୍ତି, ରୋଷେଇ କରି ଅଜାଙ୍କୁ ତ କେହି ବନ୍ଧୁବାନ୍ଧବ, ଆତ୍ମୀୟ ଥିଲେ ସେମାନଙ୍କୁ ଖାଇବାକୁ ଦିଅନ୍ତି; ପୁଣି ସେମାନଙ୍କର ଅଇଁଠା ବାସନ ମାଜନ୍ତି । ଅଜା ଖାଇ ସାରିବା ପରେ ପ୍ରତିଦିନ ତାଙ୍କୁ ବୁନ୍ଦି ଘଷନ୍ତି । ଗାଧୋଇଲା ବେଳେ ଗରମ ପାଣି ଦିଅନ୍ତି । ରୋଗ ବୈରାଗ ହେଲେ ଠିକ୍ ସମୟରେ ଔଷଧ ଖାଇବାକୁ ମନେ ପକାନ୍ତି । ବାକି ସନ୍ଧ ଦିନରୁ କିଛି ସମୟ ବଳେ, ତେବେ ବସି ବାଟି ବଡ଼ି ପାରନ୍ତି । ମୁଢ଼ି ଭାଜନ୍ତି । ଅଜାଙ୍କ ପାଟିକୁ ଭଲ ଲାଗିଲା ଭଳି ଲୁଣି ଗଜା, ସେଉ ଗାଣ୍ଠିଆ, ଆରିଷା ପିଠା ଗୁଣି ରଖନ୍ତି ।

ବିଜୟ ପଚାରିଲେ ତୁମେ ସବୁ ଆଈ ଘରକୁ ଯାଅ ନା ଅଜାଙ୍କ ପାଖକୁ ଯାଅ ?

ଅରବିନ୍ଦ କହିଲା—ଆଈ ମଫସଲରେ ରହନ୍ତି, ତେଣୁ ସେଠା ଭଲ ଲାଗେ ନାହିଁ । ତଥାପି ବୋଉ ଗଲେ, ଆମେ ତା ସାଙ୍ଗରେ ଆଈଙ୍କ ଘରକୁ ଯାଉ । ମାତ୍ର ଦିନେ ଓଳିଏ ସ୍କୁଲ ଛୁଟି ହେଲେ ମୁଁ ଅଜାଙ୍କ ପାଖକୁ ଯାଏ । ଅଜା ମତେ ଖୁବ୍ ଭଲ ପାଆନ୍ତି, ମୁଁ ଗଲେ ସେ ମୋ ପାଇଁ ନିଶ୍ଚୟ ସନ୍ଦେଶ ଆଉ ପେଡ଼ା ଆଣି ରଖିଥିବେ ।

ଅଜୟ ପଚାରିଲା—ତା'ପରେ କଅଣ ହେଲା ? ଅରବିନ୍ଦ କହିଲା—ଅଜାଙ୍କର ପ୍ରତିଦିନ ଖାଇଲା ବେଳେ ମାଛ ଟିକିଏ ହୁଏ । ମାଛ ନ ହେଲେ ସେ ଭାତଥାଳି ପାଖେ ବସନ୍ତି ନାହିଁ । ସେ ଗୋଟିଏ ପ୍ରକାର ମାଛ ମଧ୍ୟ ପ୍ରତିଦିନ ଖାଇବେ ନାହିଁ । ଆଜି ରୋହିମାଛ ତରକାରୀ ହେଲା ତ କାଲି ଭାକୁଡ଼ ମାଛ ତରକାରୀ ହେବ, ତହିଁ ପରଦିନ କଲାବଂଶୀ ତା ପରଦିନ ଚିଙ୍ଗୁଡ଼ି ତା ପରଦିନ ମୋହିଲା ମାଛ । ସେ ମାଛ ପୁଣି ଗଣ୍ଡେ, ଦୁଇଗଣ୍ଡ ଓଜନର ନୁହେଁ । ଅଜାଙ୍କର ଏକା ଅଧିକିଲରୁ ସାତଗଣ୍ଡ ପଚିଶ ମାଛ ଗୋଟିଏ ବକ୍ତରେ ଦରକାର । ତାଙ୍କର ଗୋଟିଏ ଲଗୁଆ କେଉଟୁଣୀ ଥାଏ । ସେ ପ୍ରତିଦିନ ସକାଳେ ଆସି ତଟକା ମାଛ ଦେଇଯାଏ । ମାସ ଶେଷରେ ପଇସା ପାଏ । ସେ ହିସାବ ମଧ୍ୟ ପୂଜାରି ତାଙ୍କ ଖାତାରେ ଟିପିରଖନ୍ତି ।

ଅଜା ବର୍ଷ ଭିତରେ ଦୁଇଟି ବ୍ରତ ଅତି ନିଷ୍ଠାର ସହିତ ପାଳନ୍ତି । ଗୋଟିଏ ହେଲା କୃଷ୍ଣ ଜନ୍ମ, ଅନ୍ୟ ଦିନଟି ହେଲା—କାର୍ତ୍ତିକମାସ ବଡ଼ ଏକାଦଶୀ । କାର୍ତ୍ତିକପୂର୍ଣ୍ଣିମା ଦିନ ସେ ମାଛ ତରକାରୀ ଅରୁଆ ଭାତ ଖାଆନ୍ତି ।

ଅବିନାଶ କହିଲା— 'ବଡ଼ ନିଷ୍ଠାପର ଅଜା ତ ତୋର ?"

ଅରବିନ୍ଦ କହିଲା—"ପ୍ରତିବର୍ଷ କାର୍ତ୍ତିକପୂର୍ଣ୍ଣିମା ଦିନ ଅଜା ସକାଳୁ ସମୁଦ୍ରରେ ସ୍ନାନ କରି ଆସି ଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ଦର୍ଶନ ସାରି ସିଧା ପଶନ୍ତି ମାଛ ମାର୍କେଟ ଭିତରେ । ଖଙ୍ଗା ମାଛ ହେଉ, ଇଲିସି ମାଛ ହେଉ କି ରୋହି, ଭାକୁଡ଼, ଚିଙ୍ଗୁଡ଼ି ମାଛ ହେଉ ଯାହା ପାଆନ୍ତି ସେଥିରୁ କିଲେଟିଏ ବାନ୍ଧି ଘରକୁ ଆସନ୍ତି । ଆଈତ ମାସକ କାର୍ତ୍ତିକ କରୁଥାଏ । ସେ ଦିନ ପୁଣି ପୂର୍ଣ୍ଣିମା, ସେ ମାଛକୁ ଦେଖି ଆଈ ଇମିତି ବିଗିଡ଼ିବେ ଯେ, କଥାରେ କହି ହେବ ନାହିଁ । ମାତ୍ର ଅଜା ଆଈଙ୍କୁ ଶାନ୍ତେଇଲା ଭଳି ମୁରୁକି ହସା ଦେଇ କହନ୍ତି କାର୍ତ୍ତିକପୂର୍ଣ୍ଣିମା ସକାଳ ଅଠଟା, ନଅଟା, ଠାରୁ ଗଲଣି ନା ଆଉ ଦିନ ସାରା ଅଛି ? ସମୁଦ୍ର ସ୍ନାନ, ଜଗନ୍ନାଥଙ୍କୁ ଦର୍ଶନ ପରେ ଯେଣିକି ମାଛ ଖାଅ, ମାଂସ ଖାଅ କି ଅଣ୍ଡା, କୁକୁଡ଼ା ରାନ୍ଧି ଖାଅ, ସେଥିରେ ଆଉ ଦୋଷ ନାହିଁ । କାରଣ ପୂର୍ଣ୍ଣିମାରେ ସେହି ଜୀବମାନଙ୍କର ଆତ୍ମା ଯାଇ ଆମ ଗର୍ଭରେ ଥିବା ପରମାତ୍ମାଙ୍କ ସଙ୍ଗେ ମିଶିବ । ତେଣୁ ସେମାନେ ଭଲଦିନରେ ମୁକ୍ତି ପାଇବେ । ସେମାନଙ୍କୁ ମୁକ୍ତି ଦେଲେ ଆମମାନଙ୍କର ମଧ୍ୟ ପୁଣ୍ୟ ହେବ । ଏଥିରେ ଠାକୁର ତାଙ୍କ ଇଚ୍ଛା, ପୂର୍ଣ୍ଣିମାରେ ଆମଦ୍ୱାରା ପୂର୍ତ୍ତି ହେଲା ବୋଲି ଯେପରି ଖୁସି ହେବେ ଆମେ ଭୋଜନରେ ତୃପ୍ତି ଲାଭ କରି ସେମିତି ଖୁସି ହେବୁ । ଜୀବଟି ଗୋଟିଏ ଭଲ ଦିନରେ ଆତ୍ମା ବିସର୍ଜନ କରି ମୁକ୍ତିଲାଭ କରିଥିବାରୁ ଠାକୁର ଓ ଆମ ଉପରେ ଖୁସି ହେଉଥିବ ।।

ଆଣ୍ଡୁ ତୁଳସୀମୂଳେ ବସି ନାଳ, ନେଳ, ଧଳା, କଳା, ହଳଦିଆ ପଞ୍ଚବର୍ଣ୍ଣ ମୁରୁଜ ଉପରେ ଗୁଡ଼ କଦଳୀ ଥୋଇ ପାଣି ଛଡ଼ାଇ, ମାଳ ଗଡ଼େଇ ଜପ କରୁ କରୁ କହିବେ--- ରଖିଦେଇ ଥାଅ ତୁମ ବେଦ ପୁରାଣ କଥା । ତୁମ ଇଚ୍ଛା ତୁମେ ଯାହା କରୁଛ କର । ହେଲେ ଏ ଆଇଁସ, ସଙ୍କୁଡ଼ ଯେପରି ମୋ ହବିଷ ଘର ଦୁଆର ମୁହଁକୁ ନ ଆସେ, କି ତୁଳସୀ ଚୌରା ବାଟ ଦେଇ ନଯାଏ । ସବୁଦିନ ଅଜା ତାଙ୍କ ଶୋଇବା ଘରେ ଖାଆନ୍ତି । ମାତ୍ର କାର୍ତ୍ତିକ ପୂର୍ଣ୍ଣମୀ ଦିନ ଆଣ୍ଡୁ ପାଟିରେ ସେହି ରୋଷେଇ ଘର ଭିତରେ ପଶି ଖାଇପିଇ ଶୋଇବା ଘରକୁ ଆସନ୍ତି । ଆମେ ଯଦି କେହି ପାଖରେ ଥାଉ, ସେଦିନ ଅଜାଙ୍କ ଅଡ଼େ ନଖାଇ ପୂର୍ଣ୍ଣମୀ ବୋଲି ଆଣ୍ଡୁଙ୍କ ଅଡ଼େ ହବିଷ ଭାତ ଖାଉ ।

ଯେଉଁଦିନ ଅଜା ଉପାସ କରିବେ, ତାର ତିନି ଦିନ ଆଗରୁ ପୂଜାରୀକୁ ବସାଇ ତାଲିକା ପ୍ରସ୍ତୁତ ହବ । ସେ ସକାଳୁ ଉଠି ଗାଧୋଇ ଠାକୁର ଘରୁ ଆସିବା ପରେ କଅଣ ଖାଇବେ, ଦର୍ଶନ ବେଳେ କଅଣ ଖାଇବେ, ଗୃରଟା ବେଳେ କଅଣ ଦିଟା ପାଟିରେ ପକାଇବେ ଏବଂ ରାତିରେ କେଉଁ ଭୋଗ ପାଇବେ ?

ପୂଜାରି ମଧ ସେଥିରେ ଅଭ୍ୟସ୍ତ । ସେ ତାଲିକା ଆଣି ଦେଖାଇବ । ଆଜ୍ଞା ସକାଳେ ସ୍ନାନ ପ୍ରକାର ସାରି ଠାକୁର ଘରେ ମୁଣ୍ଡି ଆମାରି ଆସିଲାବେଳକୁ ଠାକୁରଙ୍କୁ ଛେନା, କଦଳୀ, ମିଠା, ନଡ଼ିଆ ମିଶି ବାଲଭୋଗ ହୋଇଥିବ । ସେତକ ପାଇ ଆପଣ ବିଶ୍ରାମ କରିବେ । ଏଗାରଟାରେ ଠାକୁର ପୁଣି ଲୁଚି, ପାୟସ, ଦେଶୀ କଦଳୀ ଚକଟା, ଘିଅଫୁଟା ତରକାରୀ ଭୋଗ ହେବ ! ଆପଣ ତା ଖାଇ ଶୋଇବେ । ଉଠିଲାବେଳକୁ ଖାସ୍ତାଗଜା, ଖଜା ଦିଖଣ୍ଡ ପାଟିରେ ପକାଇବେ, କାରଣ ରାତି ମନୋହି କଲାବେଳକୁ ରାତି ଆଠଟା ନଅଟା ରୁକମ ହେବନାହିଁ । ରାତିରେ ଚୂଡ଼ାଘସା, ପାୟସ, ଡାଲମା, ଖଟା ଏବଂ ଦେଶୀ କଦଳୀ ତ ଭୋଗ ହିଆଯିବ । ତେଣୁ ଆପଣ ସେଥିରୁ କିଛି ପାଇ ରାତି ବିଶ୍ରାମ କରିବେ । ତହିଁ ପରଦିନ ସକାଳେ ତ ଆପଣ ଉପ-ବାସରେ ଦୁର୍ବଳ ହୋଇ ପଡ଼ିଥିବେ । ତେଣୁ ସାମାନ୍ୟ ମାଛ ତରକାରୀ, ଭାତ, ହରଡ଼ଡାଲି, ବିଲାତିଖଟା, ଶାଗ, ଆଳୁ କୋବି ଭଜା ଭୋଜନକରି ପୂର୍ବଦିନଟି ବିଶ୍ରାମ ନେବେ ।

ଅଜାଙ୍କୁ ଆଉ ତାଙ୍କୁ ମିଳିଥିବା ପୂଜାରୀଙ୍କର କଥାବାର୍ତ୍ତା ଶୁଣିଲେ ହସି ହସି ଗଡ଼ିଯିବ । ଅଜାଙ୍କ ଘରେତ ଭଲ ଭଲ ଜିନିଷ ସବୁବେଳେ ଖାଇବାକୁ ମିଳେ । ତେଣୁ ଭାରି ମଜାଲାଗେ ।

ସେଦିନ ଜନ୍ମାଷ୍ଟମୀ ଅଜାଙ୍କର ଉପବାସ । ଦୁଇଦିନ ପୂର୍ବରୁ ପୂଜାରି ଠାକୁରଙ୍କ ପାଖରେ କଅଣ କଅଣ ଭୋଗ ହେବ, ଅଜା ବୁଝିଥର ପଚାରି ସାରିଲେଣି । ପୂଜାରି ମଧ୍ୟ ତାଲିକା କରି ଶୁଣାଇ ଦେଇଥାଆନ୍ତି । ମୁଁ ଥାଏ ଅଜାଙ୍କ ପାଖରେ । ମୋ ପାଇଁ ଅଜାଙ୍କର ଭାରି ଚିନ୍ତା ପିଲାଟା ଭାତ ନ ଖାଇ ଦିନଟାଯାକ ରହିବ କିପରି ? ମାତ୍ର ମୁଁ ଅଜାଙ୍କୁ କହିଥାଏ, ତୁମେ ମୋପାଇଁ ବ୍ୟସ୍ତ ହେବନାହିଁ; ତୁମର ଠାକୁର ଭୋଗ ଖାଇ ମୁଁ ଦିନଟି କଟାଇ ଦେବି ।

ସକାଳୁ ଅଜା ଉଠିଲେ । ନିତ୍ୟକର୍ମ ସାରିଲେ । ଠାକୁର ଘରେ ମୁଣ୍ଡି ଆମାରି ଶୋଇବା ଘରକୁ ଗଲେ । ସେତେବେଳକୁ ପୂଜାରି ଠାକୁରଙ୍କୁ ବସାଇ ପୂଜା ସାରିଥିଲେ । ମୁଁ ମଧ୍ୟ ଦାନ୍ତ ଘଷି ପ୍ରସ୍ତୁତ ହୋଇ ରହିଥିଲି । ଅଜାଙ୍କ ପାଇଁ ପୂର୍ବ ନିର୍ଦ୍ଧାରିତ ତାଲିକା ଅନୁଯାୟୀ ଛେନା, ନଡ଼ିଆ, ମିଠା, ଦେଶୀକଦଳୀ ଜଳଖିଆ ପାଇଁ ଆସିଲା । ମୋ ପାଇଁ ମଧ୍ୟ ଗୋଟିଏ ଜାଗାରେ ଆସି ରହିଲା । ଜଳଖିଆ ପାଇଁ ଏତେ ପରିମାଣରେ ଏସବୁ ଜିନିଷ ଆସିଥିଲା ଯେ, ସନ୍ଧ୍ୟା ବେଳେଯାଏ କିଛି ନ ଖାଇଲେ ମଧ୍ୟ ଯାଏ ଆସେନାହିଁ ।

ଅବିନାଶ ପଚାରିଲା--ଅଜା ତୋର ଆଜି ଜନ୍ମାଷ୍ଟମୀରେ ନିର୍ଜଳ କଲେ କି ?

ଅରବିନ୍ଦ କହିଲା—ନିର୍ଜଳ ? କଅଣ ମଜା ହେଲା ଶୁଣୁନ ? ଅଜା ଭୋଗଟିକ ପାଇ ଦେଇ ଶୋଇବା ଘର ଖଟ ଉପରେ ଟିକିଏ କଡ଼ ଲେଉଟାଉଛନ୍ତି, ଏହି ସମୟରେ ପୂଜାରିଙ୍କୁ ଡାକ ପଡ଼ିଲା । ପୂଜାରି ନାଁ ହରି ହର । 'ହରିହର', ହରିହର ଦୁଇଥର ଅଜା ଡାକି-ଛନ୍ତି କି ନାହିଁ ହରିହର ଗୋଟିଏ ଦୀର୍ଘ ସ୍ୱରରେ "ଗଲି ଆଜ୍ଞା" ବୋଲି କହି ହାଜର ହୋଇ-ଗଲେ । ଅଜା କହିଲେ—'ହରିହର ଶରୀରଟା କାହିଁକି ଆଜି ଅବଶ ଲାଗୁଛି ।'

ହରିହର କହିଲେ—ଆପଣଙ୍କର ଆଜି ଉପବାସ । ଅନ୍ନ ଭୋଜନ ନାହିଁ । ତେଲ ଉପରେ କୌଣସି ପାକ ହେବନାହିଁ । ଯାହା ଘୃତରେ ହେବ । ଏହି ଉପବାସ ବା ବ୍ରତ ବୃଦ୍ଧ ବ୍ରାହ୍ମଣ, ବିଧବା ସ୍ତ୍ରୀ ଲୋକଙ୍କୁ ପାଏ । ଆପଣଙ୍କ ଭଳି ଲୋକଙ୍କ ପକ୍ଷରେ ଏହା ସବୁଠାରୁ କଷ୍ଟ ।

ତଥାପି ତ କୃଷ୍ଣଜନ୍ମଟା ପାଳନ କରିବାକୁ ପଡ଼ିବ । ଶ୍ରୀକୃଷ୍ଣ ଆମ ଇଷ୍ଟ ଦେବତା ଅଜା କହି କିଛି ସମୟ ନୀରବ ରହିଲେ ।

ହରିହର ତ ଅବୁଝାମଣା ରାଜାଙ୍କୁ ପାଳିବଣ୍ଟା ମନ୍ତ୍ରୀ । ସେ କହିଲେ—ଆପଣ ତ ଏତିକବେଳକୁ ଅବଶ ହୋଇ ପଡ଼ିଲେଣି । ଆଜି କିପରି ଦିନସାରା ରହିବେ, ଏହା ପରମ ଚିନ୍ତାର ବିଷୟ ।

ଅଜା କହିଲେ—ଆହେ ଉପବାସ କଅଣ ଆଜ ସକାଳକୁ ଆମ୍ଭେ ଆରମ୍ଭ କରିଛୁ ? ଛାଡ଼ା କାଲି ରାତିରୁ ଆରମ୍ଭ ହେଲାଣି ନା—କଅଣ କହୁଛ ? ଗତ ରାତି ଭୋଜନଠାରୁ ଅମ୍ଭେ ଏକପ୍ରକାର ଗୋଲକବିହାରୀ ଶ୍ରୀକୃଷ୍ଣଙ୍କର କାଷ୍ଠାପାଳନ କଲୁ ବୋଲି ବୁଝିବାକୁ ହେବ ।"

ହରିହର କହିଲେ—ହଁ ଆଜ୍ଞା କାଲି ବଡ ସାଢ଼େ ନଅଟା ମଣୋହି ପରେଠାରୁ ତ ଆଉ ହଜୁରଙ୍କର ଭୋଜନ ହୋଇନାହିଁ । ଏହି ଯାହା ଏବେ ପ୍ରସାଦ ଟିକଏ ପାଇଲେ ।

ଅଜା କହିଲେ—"ଏ ତ ପ୍ରସାଦ, ଏତ ଭୋଜନ ନୁହେଁ ।"

ହରିହର କହିଲେ—'ହଁ,' କଛୁ ସମୟ ନୀରବ ରହି କହିଲେ—ମୁଁ ସେଣେ ଘଟରେ ଗୁଞ୍ଜି ଆଳୁ, ମଟର, ବାଇଗଣ, ଝୁଡ଼ଙ୍ଗ, ସାରୁ, ବିଲାତି, ଶିମ୍ବ, ବୁଟଡାଲି, କଞ୍ଚାକଦଳୀ ପକାଇ ସବ୍‌ଜି ବସାଇ ଦେଇ ଆସିଛି । ଏହାପରେ ଲୁଚି ଛଣାଯିବ, ବେହେରା ମଧ ଖିରି ଦେଇଗଲେଣି । ଦେଶୀ କଦଳୀ ତ କାଲିଠାରୁ ବଜାରରୁ ଆସି ରହିଛି । ଖିରି ଦେହରେ ଦେଶୀ ପାଚିଲା କଦଳୀ, ଚିନି ଦିଆଯାଇ କେଟା ହେବ ଏବଂ ତା ଉପରେ ଟିକଏ ଗୋଲମରିଚର ଗୁଣ୍ଡ ବୁଲିବ ।

"ବେଶ ବେଶ ତୁମେ ଯାଅ, କାମରେ ଲାଗ—" କହି ଅଜା ମୋତେ ପାଖକୁ ଡାକିଲେ । କହିଲେ—ବୁଝିଲୁ ଅରୁ ! ଶରୀରଟା ଆଜ ଭଲ ଲାଗୁନି । ବୃଦ୍ଧ ଶରୀର ହେଲା । ଆଈ ତ ତୋର ସବୁବେଳେ ଯାଇ ଗାଁରେ ରହିଲା । ଠାକୁର ପୂଜା, ତୁଳସୀ ପୂଜା, ସୂର୍ଯ୍ୟଦେବତା ପୂଜାରେ ଦିନଗଲା । ଯେତେ କହିଲି—ଉପାସବାର ଛାଡ଼ । ପୂଜା, ଆରାଧନା ବ୍ରତ ଏଣିକି ଥିଅ ବୋହୂ କରନ୍ତୁ । ତୁମେ ଏଇଠି ବସି ଖାଇପିଇ ଆନନ୍ଦରେ ଦିନ କେତୋଟା କଟାଇଦିଅ । ନହେଲେ ଆଈ ତୋର କଅଣ ଶୁଣିଲା ? ନଶୁଣୁ ! ମୁଁ କଲୁ ସେ ମଫସଲ ଜାଗାରେ ତୋ ଆଈର ତିନଶହ ଷାଠିଏ ଦିନରେ ତିନଶହ ସତୁରି ଦିନ ବ୍ରତ ଉପାସ ଭିତରେ ଚଳିପାରିବ ନାହିଁ ।"

ମୋତେ ଖାଲି ଅଜାଙ୍କ କଥା ଶୁଣି ହସ ଲାଗୁଥାଏ । ମୁଁ ଅଜାଙ୍କୁ କଛୁ ନକହି ଖାଲି ମୁଣ୍ଡଟୁଙ୍ଗାଉଥାଏ । ଏହି ସମୟରେ ଅଜାଙ୍କ ଦୁଆରେ ଲାଗୁଆ ମାଛବାଲା ରାଧୀ ଡାକ ପକାଇଲା—ବାବୁ, ବାବୁ, ବାବୁ; ଅଜା ତା ପାଟି ଠିକ୍ ବାରିଲେ । ମାତ୍ର ଜାଣି ନଜାଣି ପାରିଲା ପରି ଡାକପକାଇଲେ—'ହରିହର', 'ହରିହର' ।

ହରିହର ରାମଭକ୍ତ ହନୁମାନ ଭଳି ଆସି ହାତଯୋଡ଼ି ଠିଆହେଲେ । ଅଜା କହିଲେ ଦେଖିଲ, କିଏ ଦୁଆରେ ଡାକୁଛି । ଯେ ଡାକୁ ତାକୁ କହିଦବ—ବାବୁଙ୍କର ଆଜ ଉପବାସ । ଶରୀର ଭଲ ନାହିଁ । ଆଜ ଦେଖା ହୋଇ ପାରିବ ନାହିଁ । କାଲି ଆସିବେ ।

ହରିହର ତଳକୁ ଯାଇ ଦୁଆର ଫିଟାଇ ଦେଇ ପୁଣି ଅଜାଙ୍କ ପାଖକୁ ଆସିଲେ । କହିଲେ—"ସେହି ରାଧୀ କେଉଟୁଣୀ ଡାକୁଛି ।"

ଅଜା କହିଲେ—"କାହିଁକି ଡାକୁଛି ? ତାକୁ କହ—ଆଜ କୃଷ୍ଣଜନ୍ମ, ବାବୁଙ୍କର କାଷ୍ଠା ଉପାସ । ସେ ଆଜ ଆମିଷ କମ୍ବା ଆମିଷ ବିକ୍ରୀ କରୁଥିବା ଲୋକଙ୍କ ମୁଖ ଦେଖିବେ ନାହିଁ ।

ହରିହର ପୁଣି ଦୁଆର ମୁହଁକୁ ଯାଇ ରାଧୀ ସହିତ କଅଣ କଥାବାର୍ତ୍ତା କରି ଫେରି ଆସି ଅଜାଙ୍କ ପାଖକୁ ଯାଇ କହିଲେ—ରାଧୀ କହୁଛି, ବାବୁ ପଛକେ ମୋ ପସରାକୁ ନ ଚାହାନ୍ତୁ କି ମୋ ମୁହଁ ନ ଦେଖନ୍ତୁ, ମୁଁ ଖାଲି ଆଡ଼ୁଆଳରେ ରହି ପଦଟିଏ କଥା କହି, ଚାଲିଯିବ ।

ଅଜା ନିର୍ଦ୍ଦେଶ ଦେଲାପରି କହିଲେ—"ତାର କଅଣ ଆମ ଉପରେ ଟଙ୍କା ବାକି ଅଛି ?"

ହରିହର କହିଲେ—କାଲିପରା ଆପଣ ସବୁ ଚୁଟାଇ ଦେଇଛନ୍ତି ।

"ତେବେ ଆସିଛି କାହିଁକି ?" ଆଶ୍ଚର୍ଯ୍ୟ ହୋଇ ହରିହରଙ୍କ ମୁହଁକୁ ଚାହିଁଲେ ଅଜା ।

ଏହି ସମୟରେ ରାଧୀ କେଉଟୁଣୀ ଆସି ଅଜାଙ୍କ ଶୋଇବା ଘରବାରଣ୍ଡା ପାଖରେ ହାଜର । ସେ ଅଜାଙ୍କୁ ଶୁଣେଇ ଶୁଣେଇ କହିଲା—"ପୂଜାରି ତୁମେ କହୁନ । ଆଜ ଗୋଟାଏ ଦୁଇ କେଜିଆ ରୋହିମାଛଟାଏ ଜାଲରେ ପଡ଼ିଲା । ମହାନଦୀ ମାଛ । ଖରି ମିଠା । ହଳଦୀଗୁଣ୍ଡି ପରି ଦେହ । ବାବୁ ରଖିଲେ, ରଖନ୍ତୁ ନ ରଖିଲେ ନାହିଁ । ବାବୁ ଖାଲି ମାଛଟିକୁ ଟିକଏ ଅନେଇ ଦିଅନ୍ତୁ, ମୋର ମୁଁ ଚାଲିଯିବ ।"

ଅଜା ମାଛ କଥା ଶୁଣି ଦୁଇକାନ ଉପରେ ଦୁଇଟା ଆଙ୍ଗୁଠି ଭର୍ତ୍ତିକରି କହିଲେ କୃଷ୍ଣ, କୃଷ୍ଣ, । ଆଜ ଏ ପବିତ୍ର ଜନ୍ମାଷ୍ଟମୀରେ ମୁଁ ଚାହିଁବା କଥା ଦୂରେ ଥାଉ, ତା ନାଁ ସୁଦ୍ଧା ଧରିବିନି କି ଶୁଣିବିନି ।

ରାଧୀ ଅଜାଙ୍କୁ ଠିକ୍ ଚହ୍ନେ । ସେ ଜାଣେ ଅଜା ଯଦି ଟିକିଏ ମାଛଟାକୁ ଖାଲି ଚାହିଁ ଦେବେ, ତେବେ ତାଙ୍କର ଜନ୍ମାଷ୍ଟମୀ ଉପବାସ ଭୁଆଡ଼େ ଚାଲିଯିବ । ମାତ୍ର ତାଙ୍କୁ ଡାକ ମାଛଟାକୁ ଦେଖାଇବା ହେଲା ଅସଲ କଥା ।

ରାଧୀ ପୂଜାରୀ ହରିହରଙ୍କୁ କହିଲା—"ବାବୁଙ୍କୁ ତୁମେ କହୁନ—ଉପାସ ବାରରେ ତ ଲୋକେ ସୁନାକୁ ହାତରେ ଧରୁଛନ୍ତି, ଦେଖୁଛନ୍ତି ଧାନ ମାପୁଛନ୍ତି, ହଳଦୀ ଲଗଉଛନ୍ତି, ତାଙ୍କ ତରକାରୀରେ ହଳଦୀ ପଡ଼ୁଛି, ଖାଉଛନ୍ତି, ଏ ମଧ୍ୟ ସେହିଭଳି ନଛଟ ହଳଦୀବର୍ଣ୍ଣର ଚିଜଟିଏ । ବାବୁଙ୍କର ଆଖିପଡୁ । ସେଥିରେ ଦୋଷ କଅଣ । ଖାଇଲେ ସିନା ଦୋଷ । ଦେଖିବାରେ ଦୋଷ କେଉଁଠି ? ସେ ଖାଲି ଦେଖିଦେଲେ ଯଥେଷ୍ଟ । ମୋ ମାଛ ଅନ୍ୟତ୍ର ବିକ୍ରୀ ହୋଇଯିବ ।"

ହରିହର ଖାଲି ରାଧୀ କେଉଟୁଣୀ ପାଖରୁ ଅଜାଙ୍କ ପାଖକୁ ପୁଣି ଅଜାଙ୍କ ପାଖରୁ ରାଧୀ କେଉଟୁଣୀ ପାଖ ହେଉଥାନ୍ତି ।

ଅଜା କହିଲେ—ହରିହର ?

ହରିହର—'ଆଜ୍ଞା' କହି ଅଜାଙ୍କ ପାଖକୁ ଗଲେ ।

"ରାଧୀ କଅଣ କହୁଛି ତୁମେ ଶୁଣିଲ ? ତୁମର ସେଥିରେ ମତାମତ କଅଣ—" ଅଜା ପଚାରିଲେ ?

ହରିହର କହିଲେ – "ରାଧୀ ଯାହା କହୁଛି, ମିଛ ନୁହେଁ । ହଜୁରଙ୍କର କାଲି ବ୍ରତ ଦିବସ । ଧାନ୍ୟ, ସୁବର୍ଣ୍ଣ, ହରିଦ୍ରା ଉପରେ ଯେତେବେଳେ ନଜର ପଡୁଛି, ସେତେବେଳେ ଏ ସୁବର୍ଣ୍ଣ ଜନ୍ତୁ ଉପରେ ଦୃଷ୍ଟି ପଡ଼ିଲେ ବା କ୍ଷତି କଅଣ ? ତାପରେ ଆପଣ ତ ଆଜି ସେଥିପ୍ରତି ଅନାସକ୍ତ । ଭଗବାନ କହିଛନ୍ତି—ଆସକ୍ତିରେ ପାପ, ଆସକ୍ତି ଶୂନ୍ୟ ହେଲେ ପୁଣ୍ୟ ।"

ତେବେ ତୁମେ କହୁଛ ଆମେ ଟିକିଏ ଦୃଷ୍ଟି ପକାଇବା ।" ଅଜା ହରିହରଙ୍କ ଆଡକୁ ଚାହିଁଲେ—

ହରିହର କହିଲେ —"ବାବୁଙ୍କର ଦୃଷ୍ଟି ପଡ଼ିଲେ, ରାଧୀ ଫେରିଯିବ ବୋଲି କହୁଛି ।"

"ହଉ" ତୁମେ ଯେତେବେଳେ କହୁଛ, ରାନ୍ଧି ଦେବାରେ ବା ଦୋଷ କଅଣ ? ଆମେ ତ ଯେ ଜିନିଷକୁ ଆଜିପରା ଜନ୍ମାଷ୍ଟମୀ ପବିତ୍ର ଦିବସରେ ତୁଣ୍ଡରେ ଉଚ୍ଚାରଣ କରୁନୁ କି ଆମ୍ଭରେ ତା' ପ୍ରତି ଲାଳସା ଆଣୁନୁ"—ଅଜା ଏହା କହି ରାଧୀ ମାଛପସରାକୁ ଆସି ଆଖି ପକାଇଲେ । ମୁଁ ମଧ୍ୟ ଆସି ଟିକିଏ ଗୁହାଁ ଦେଲି । ରାଧୀ ଯେତେବେଳେ ମାଛଟି ଉପରୁ ଓଦାକନାଟି ଉଠାଇ ଦେଲା, ପ୍ରକୃତରେ ଅଜା ଏକା କାହିଁକି ମୋର ମଧ୍ୟ ସେ ମାଛଟି ପ୍ରତି ବଡ଼ ଲୋଭ ହେଲା । ପ୍ରାୟ ଦୁଇ କିଲୋର ରୋହି ମାଛଟିଏ । ହଳଦୀ ଗଣ୍ଡି ପରି ଦିଶୁଛି । ସଙ୍ଗେ ସଙ୍ଗେ ଧରା ହୋଇ ଆସିଲା ପରି ଜଣାପଡ଼ୁଛି ।

ଅଜା ମାଛଟିକୁ ଗୁହାଁ ରହିଛନ୍ତି ତ ରହିଛନ୍ତି । ରାଧୀ ମହା ଚାଲାକ । କହିଲା—"ବାବୁ ମୁଁ ଯାଉଛି । ସକାଳୁ ସକାଳୁ ମାଛଟି ଦୈବାତ୍ ଜାଲରେ ପଡ଼ିଗଲା । କେତେ ଗରାଖ ନବାକୁ ବସିଥିଲେ । ମାତ୍ର ମୁଁ ଭାବିଲି ମୋ ବାବୁଙ୍କୁ ତ ରୋହି ମାଛ ଭଲ ଲାଗେ । ଅବଶ୍ୟ ଆଜି ଶ୍ରୀକୃଷ୍ଣଙ୍କ ଜନ୍ମ ଦିବସ । ତଥାପି ଟିକିଏ ଦେଖେଇ ଦେଇ ଆସେ ।"

ହରିହର ହାତକୁ ହଲାଇ ମାଛଟିକୁ ଦେଖି ଅତ୍ୟନ୍ତ ଆଗ୍ରହରେ କହିଲେ—"ଭଲ କଲୁ, ଭଲ କଲୁ, ହେଲେ ଆଜି ତ ଦେଖୁଛୁ ହଜୁରଙ୍କର କାଣ୍ଡା ବ୍ରତ । ଆଜି ଯାଆ । ପାରିବୁ ଯଦି କାଲି ସକାଳୁ ଇମିତି ଗୋଟେ ମାଛ ଧରି ଆସିବୁ ।"

ରାଧୀ କହିଲା—ମୁଁ ତେବେ ଯାଉଛି ବାବୁ ! ଅଜାଙ୍କର ତ ମନ ରହିଲାଣି ମାଛଟି ଉପରେ । ସେ କହିଲେ—"ହରିହର, ରାଧୀ ଫେରିଯାଉ, ଆଉ କଅଣ କରିବା । ଉପାସବ୍ରତ ଦିନରେ ତ ଏପରି ଜିନିଷ ଦେଖାଦେଲା । ଆମକୁ ଆଜି ଭୋଗନାହିଁ । ସେ ଆମ ଦୁର୍ଭାଗ୍ୟ ।"

ହରିହର କହିଲେ—"ଭୋଗ ନାହିଁ କାହିଁକି ଆଜ୍ଞା, ଭାବିଲେ ସବୁ ଭୋଗ ହୋଇ ପାରିବ ।"

ଅଜା କହିଲେ—କିପରି ?

ହରିହର ବୁଝାଇଦେଲେ—ଭଗବାନ ଶ୍ରୀକୃଷ୍ଣ ତ ଦିନରେ ଜନ୍ମ ହୋଇ ନାହାନ୍ତି । ସେ ଜନ୍ମ ହୋଇଛନ୍ତି ଅର୍ଦ୍ଧରାତ୍ରିରେ । ତେଣୁ ତାଙ୍କ ପାଇଁ କାଣ୍ଡା ପ୍ରକୃତରେ ଆଜି 'ଅର୍ଦ୍ଧ' ରାତ୍ର-

ଠାରୁ ପାଳିବାର ବିଧି । ଶ୍ରୀକୃଷ୍ଣଙ୍କୁ ଦେବକୀ, ବସୁଦେବ ଯେଉଁବେଳେ ଜନ୍ମ ଦେଇଥିଲେ ଏବଂ ନନ୍ଦ ଯେଉଁଦିନ ଉତ୍ସବ ପାଳିଥିଲେ ଆମର ସେତିକିବେଳେ ସେହିଦିନ ଉତ୍ସବ ପାଳିବା କଥା ।

"ପାଞ୍ଜିକାର, ଗଣକ ଆଜି ଜନ୍ମାଷ୍ଟମୀ ବିଧି ପାଳନ ବୋଲି କହୁଛନ୍ତି"—ଅଜା ପଚାରି ହରିହରଙ୍କ ମୁହଁକୁ ଚାହିଁଲେ ।

"ସେହି ଗଣକ ପଞ୍ଜୀକାର ତ ପୁଣି କହୁଛନ୍ତି ଆଜି ଅଷ୍ଟମୀ, ପୁଣି କାଲି ଅଷ୍ଟମୀ, ସବୁ ତାଙ୍କ ପାଖେ ସମ୍ଭବ ।" ହରିହର ଏହା କହି ବିଧୀଆଡ଼କୁ ଚାହିଁଲେ ।

ବିଧୀ ଦେଖିଲା, ଏତେବଡ଼ ମାଛଟା କେଉଁଠିବା ଆଜିପରି ଦିନରେ ବିକିବ । ତେଣୁ ସେ ହରିହରଙ୍କ କଥାକୁ ସମର୍ଥନ କରି କହିଲା—ମହାପ୍ରଭୁ ଶ୍ରୀକୃଷ୍ଣ ଜନ୍ମ ହେଲାପରେ ସିନା କାଷ୍ଟା ଉପାସ, ଉତ୍ସବ, ବ୍ରତ । ଜନ୍ମ ପୂର୍ବରୁ ତ ପିଲା ଦେଖା ନାହିଁ । କାଷ୍ଟା କାହା ପାଇଁ ପାଳିବ ? ନା କଅଣ କହୁଛ ପୂଜାରି ?

ଅଜା ତାଙ୍କର ସେପରି ମନ ନାହିଁ, ବାଧ ବାଧକରେ କହୁଛନ୍ତି ସେହିପରି ରହି ରହି କହିଲେ—ହରିହର! ବିଧୀ ସକାଳଠାରେ କଅଣ ଫେରିଯିବ ? ଜିନିଷଟା ତେବେ ରଖିଦିଅ । ଯାହା କହିଲ, ଶ୍ରୀକୃଷ୍ଣଙ୍କ ଜନ୍ମ ରାତି ଅର୍ଦ୍ଧପରେ । ତେଣୁ ସେତିକିବେଳକୁ ଏ କାଷ୍ଟା ପାଳିବା । "ଏଣେ ମାଛ ଝୋଳ, ଭଜା ଖାଇବାକୁ ଅଜାଙ୍କ ପାଟିରୁ ଲାଳ ଗଡ଼ିଲାଣି, ଅଥଚ ସେଣେ 'ମାଛ' ନାଁଟା ତୁଣ୍ଡରେ ଧରିବାକୁ ସେ ନାରାଜ—"କହି ଅରବିନ୍ଦ ହସିଲା ।

ଅନ୍ୟ ପିଲାମାନେ ଅରବିନ୍ଦ କଥା ଶୁଣି ହସି ହସି ଗଡ଼ିଗଲେ,

ବିଜୟ ପଚାରିଲା—ତାପରେ କଅଣ ହେଲା ? ଅଜା ମାଛଟିକୁ ରଖିଲେ ତ ?

ଶୁଣ କମିତି ମଜା ହେଲା—ଅରବିନ୍ଦ କହିଲା । ହରିହର କହିଲେ—ହଜୁର, ଘୃତ ଛଙ୍କା ସବ୍‌ଜି ହୋଇଛି । ସବୁ କୃଷ୍ଣଭୋଗ ଅରୁଆ ଚାଉଳର ଅନ୍ନ ହେବ । ସେଥିରେ ଗୋ-ଘୃତ ପଡ଼ିବ । ରୋହିତ ମତ୍ସ୍ୟର ପେଟି ଝୋଳ ଏବଂ ଲାଞ୍ଜ, ମୁଣ୍ଡ ଭଜା ହେବ । ତାହା ଭୋଜନବେଳେ ଟିକିଏ ଦୂରରେ ରହିବ । ଆପଣ ଠାକୁରଙ୍କୁ ନୈବେଦ୍ୟ ଦେବାପରେ, ଭୋଜନପାତ୍ର ପାଖକୁ ଆସିବ । ସାମାନ୍ୟ ବହଳିଆ ହରଡ଼ଡ଼ାଲି କରିବାକୁ ଇଚ୍ଛା ଥିଲା । ଅଦା, ତେଜପତ୍ର ପଡ଼ିଥିବା

ହରଡଡାଲି ଉପରେ ଗୋ-ଘୃତ ଦେଇ ପାତ୍ରଟିଏ ଆପଣଙ୍କ ଭୋଜନପାତ୍ର ପାଖରେ ରଖିବାର ମୋର ଇଚ୍ଛା । ମାତ୍ର ସେଉଟା ଆପଣଙ୍କ ରୁଚି ଆଉ ଆଦେଶ ଉପରେ କଥା । କାରଣ ମୁଁ ଆପଣଙ୍କର ନିର୍ଦ୍ଦେଶର କିଙ୍କର ।

ଏସବୁ ବ୍ୟଞ୍ଜନ ପ୍ରତି ଯେପରି ନିସ୍ପୃହ, ସେହିଭଳି ମନୋଭାବ ପ୍ରକାଶ କରି ଅଜା କହିଲେ—"ହରିହର ତୁମର ଯାହା ଇଚ୍ଛା-ତାହାହେଲେ ଆଜି ଜନ୍ମାଷ୍ଟମୀଟା ପାଳିଥିଲେ ଭଲ ହୋଇଥାନ୍ତା । ତଥାପି ତୁମେ କହୁଛ ଅର୍ଦ୍ଧରାତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ।

ହରିହର କହିଲେ—"ହଜୁର ଧାର୍ମିକ ପୁରୁଷ । ପ୍ରତିବର୍ଷ ଏହି କାଷ୍ଠାର ସହିତ ପାଳନ କରନ୍ତି । ଅବଶ୍ୟ ଆସନ୍ତା କାଲି ନନ୍ଦଉତ୍ସବରେ ଏହି ଆପଣ ପାଳନ କରିବେ । ତଥାପି ମନ ଯଦି ମାନୁନାହିଁ, ତେବେ ଆପଣଙ୍କ ପକ୍ଷରୁ ଏ କାଷ୍ଠା ଆଜି ପାଳନ କରିବା ନିମନ୍ତେ ଜଣେ ବ୍ରାହ୍ମଣଙ୍କୁ ନିଯୁକ୍ତ କରାଯାଉ ଏବଂ ତାଙ୍କୁ ଏଥିପାଇ ଟଙ୍କାଟିଏ ଦେବା ହେଉ ।"

ଅଜା ଆନନ୍ଦରେ କହି ଉଠିଲେ—ଉତ୍ତମପ୍ରସ୍ତାବ, ଉତ୍ତମପ୍ରସ୍ତାବ, ହରିହର । କିଛି ସମୟ ରହି କହିଲେ—ହରିହର, ତୁମେ ତ ପ୍ରତିବର୍ଷ ଜନ୍ମାଷ୍ଟମୀ କାଷ୍ଠା କର ।

ହରିହର ମହା ଅଡ଼ୁଆରେ ପଡ଼ିଲେ, ସେ ଦେଖିଲେ ଏଡ଼େ ବଡ଼ ରୋହି ମାଛ । ପୁଣି ତଟକା ମାଛଟିଏ । ସେ ନିଜେ ରାନ୍ଧିବେ । ଅଥଚ ନଖାଇ କାଷ୍ଠା କରିବେ । ତଥାପି ଅଜାଙ୍କ ମୁହଁ ଉପରେ ନାହିଁ ନ କରିପାରି କହିଲେ—"ଆଜ୍ଞା' ।

ଅଜା ସଙ୍ଗେ ସଙ୍ଗେ ଟଙ୍କାଟିଏ ପକେଟରୁ ବାହାର କରି ହରିହରଙ୍କ ହାତକୁ ବଢ଼ାଇ ଦେଇ କହିଲେ—'ନିଅ, ତୁମେ ଆଜି ଆମ୍ଭ ତରଫରୁ ଜନ୍ମାଷ୍ଟମୀ କାଷ୍ଠା ପାଳନ କର । ଆମ୍ଭେ ଶ୍ରୀକୃଷ୍ଣଙ୍କ ଜନ୍ମ ଅର୍ଦ୍ଧରାତ୍ର ପରଠାରୁ ପାଳନ କରିବୁ ।"

ଏଥର ଅଜା 'ମାଛ' ନାଁ ଧରି କହିଲେ—"ଏ କଅଣ ମହାନନ୍ଦା ମାଛ, ସତ କହୁଛୁ ରାଧୀ ।

ରାଧୀ କହିଲା—ମଲ, ଏତେଦିନ ହେଲା ମୁଁ ଆପଣଙ୍କୁ ମାଛ ଦେଲିଣି, କେବେ ମିଛ କହିଛି, ଓଜନରେ କମ ଦେଇଛି ନା ପଚାପଡ଼ା ମାଛ ଦେଇ ଠକିଛି, ତୁମେ ନିଜେ ଦେଖୁନ ?" ମାଛଟିକୁ ବାହାରିକରି ବାରଣ୍ଡାରେ ଶୁଆଇ ଦେଲା ।

ଅଜା ଏ ଥର ନିର୍ବିକାର ଚିତ୍ତରେ ମାଛଟିକୁ ଉଠାଇନେଇ ହରିହରଙ୍କ ହାତକୁ ବଢ଼ାଇ ଦେଇ କହିଲେ—ଆଉ ଗୃହିଁ ରହିଲ କାହିଁକି ହରିହର । ଶୀଘ୍ର ଏହାର ଯଥାଯୋଗ୍ୟ କର୍ମ କର ।" ଆମ୍ଭେ ଯେପରି ସାଢ଼େ ଦଶଟା ସୁଦ୍ଧା ମଣୋହିରେ ବସିବୁ ।"

ହରିହର ମାଛଟିକୁ ନେଇ ରୋଷେଇ ଘରକୁ ଚାଲିଗଲେ ।

ରାଧୀ ପଚାରିଲା—"ବାବୁ, ଦାମଟା ବର୍ତ୍ତମାନ ଦେବେ, ଦରକାର ଥିଲା ।

ଅଜା ରାଧୀ ହାତକୁ ଗୋଟିଏ କୋଡ଼ିଏ ଟଙ୍କାର ନୋଟ ବଢ଼ାଇ ଦେଲେ ।

ରାଧୀ କହିଲା—'ଆଉ ପାଞ୍ଚ ଟଙ୍କା' ।

ଅଜା କହିଲେ—"ଭୋଜନ ଶେଷ ହେଉ । ମାଛର ଭଲମନ୍ଦ ବିଚାର କରି ଦେବା ।"

ରାଧୀ ଜାଣେ ଯେ, ଅଜାଙ୍କ ପାଖରେ ତା ପଇସା ବୁଡ଼ିବ ନାହିଁ । ମାଛଟି ବିକ୍ରୀ ହୋଇଗଲା ବୋଲି ତା ମନ ଖୁସି, ସେ କୋଡ଼ିଏ ଟଙ୍କାର ନୋଟ୍‌ଟି ଧରି ଆନନ୍ଦରେ ଚାଲିଗଲା ।

ତାପରେ ଅଜାଙ୍କର ଆଉ କେଉଁଥିରେ ମନ ଲାଗେ ? ସେ ମାଛ କଟା ହେବାଠାରୁ ଭଜା, ତରକାରୀ ହେବା ପର୍ଯ୍ୟନ୍ତ ସେହି ରୋଷେଇ ଘରେ ବସିଥାନ୍ତି ଏବଂ ମଝିରେ ମଝିରେ କହୁଥାନ୍ତି,—"ଟଙ୍କାଟି ରଖିଲ ତ ହରିହର, ଆମ୍ଭ ତରଫରୁ ଯେପରି ନିଷ୍ଠାର ସହିତ ଏ ଜନ୍ମାଷ୍ଟମୀ ବ୍ରତ ପାଳନ କରିବ ।"

ତାପରେ ମୋ ପାଇଁ ଓ ଅଜାଙ୍କ ପାଇଁ ଖାଇବାକୁ ବଢ଼ାହେଲା, ମାଛ ମଧ୍ୟ ଭାରି ସ୍ୱାଦ ଲାଗୁଥିଲା ।

ଅଜୟ ପଚାରିଲା—"ତୁ ମାଛ ସେଦିନ ଖାଇଲୁ ଅରବିନ୍ଦ" ? ନଖାଇବାକୁ ଉପାୟ କାହିଁ—ଅଜା ଯେତେବେଳେ ଖାଉଛନ୍ତି ? ଅରବିନ୍ଦ କହିଲା ।

ଅବନାଶ ତ ଟିକିଏ ଉବଡବାପ୍ରକୃତିର ପିଲା । ସେ କନ୍ଥୁ କନ୍ଥୁ କହି ପକାଇଲା—"କୃଷ୍ଣଜନ୍ମ ପରା ସେଦିନ ଅଙ୍ଗ'ର'ସରୁ ପାଳନ କରାଯିବ ବୋଲି ଠିକ୍ ହେଲା ।"

ସମସ୍ତେ ତା କଥା ଶୁଣି ଠୋ ଠୋ ହୋଇ ହସି ଉଠିଲେ ।

ତାପରେ କଅଣ ହେଲା ଶୁଣ ! ଅରବିନ୍ଦ ପୁଣି ଆରମ୍ଭ କଲା—ଅଜା ମୁଁ ସେଦିନ ଅରୁଆଅନ୍ନ, ଡାଲି, ତରକାରୀ, ମାଛଭଜା, ମାଛତରକାରୀ ପେଟେ ଖାଇ ଶୋଇଲି । କିଛି ସମୟପରେ ହରିହର ଆସି ଅଜାଙ୍କ ଗୋଡ଼ ଚିପିଦେଲେ । ସବୁଦିନ ଅଜାଖାଇ ଶୋଇବା ପରେ ସେ ତାଙ୍କ ଗୋଡ଼ ହାତ ଚିପି ଦିଅନ୍ତି ।

ଅଜା କହିଲେ—ହରିହର ଆଜି ମାଛଝୋଳ ଓ ମାଛଭଜା ଖୁବ୍ ଭଲ ହୋଇଥିଲା । ମାଛର ମଧ୍ୟ ସ୍ୱାଦ ଥିଲା, ମହାନଦୀ ମାଛ; ରାନ୍ଧି ମିଛ କହିବନି ।

ହରିହର କହିଲେ—ଆଜ୍ଞା, ଚିକ୍କଣ ମାଛଟା ମଧ୍ୟ । ଖାଇଲାବେଳେ ମୁହଁଯାକ ତେଲ ହୋଇ ଯାଉଥିଲା । ରାନ୍ଧିଲାବେଳେ ମଧ୍ୟ କମ୍ ତେଲ ଦେବାକୁ ପଡ଼ିଲା ।

ଅଜା କହିଲେ—ତୁମେ ତେବେ କଅଣ ମାଛ ତରକାରୀ ଖାଇଲ ହରିହର ।

ହରିହର କହିଲେ—"ଆପଣଙ୍କ ମଣୋହି ପରେ ପରେ ତ ମୁଁ ଏହି ଭୋଜନ ସାରି ଆସୁଛି ହଜୁର ।"

ଅଜା ଟିକିଏ ବିଚଳିତ ଓ ବିରକ୍ତ ହୋଇ କହିଲେ—ତୁମକୁପରା ଆଜି ଜନ୍ମାଷ୍ଟମୀ କାଷ୍ଠା ଆମ୍ଭ ପକ୍ଷରୁ ପାଳନ କରିବାକୁ ଏକଟଙ୍କା ଦିଆଯାଇଥିଲା ?

ହରିହର କହିଲେ—ମୁଁ ତାର ସୁବ୍ୟବସ୍ଥା କରିଛି ଆଜ୍ଞା ?

କି ବ୍ୟବସ୍ଥା କରିଛ ?—ଅଜା ହରିହରଙ୍କ ମୁହଁକୁ ଚାହିଁଲେ ।

ହରିହର କହିଲେ—ହଜୁର, ମାଛଟି ନେଇ ମୁଁ କାଟିଲି, ମସଲା ବାଟିଲି । ମାଛ ରାନ୍ଧିଲି, ମୋର ଆତ୍ମା ସେ ମାଛର ଆତ୍ମାଠାରେ ରହିଲା, ଆଘ୍ରାଣରେ ଅର୍ଦ୍ଧ ଭୋଜନ ହୋଇଗଲା । ମୁଁ ଦେଖିଲି ହଜୁରଙ୍କର ଜନ୍ମାଷ୍ଟମୀ କାଷ୍ଠାରେ ବିଘ୍ନ ଘଟିବ । କାରଣ ହୃଦରେ ମୋର

ସେହିତ ମତ୍ସ୍ୟ ପ୍ରତି ଅନାସକ୍ତ ମନୋଭାବ ପ୍ରକାଶିତ ହେଉନାହିଁ । ତେଣୁ ଜଣେ ବୈଷ୍ଣବ ବ୍ରାହ୍ମଣ ରାସ୍ତାରେ ଠାକୁର ମନ୍ଦିରକୁ ଯାଉଥିଲେ । ତାଙ୍କୁ ଟଙ୍କାଟି ଦେଇ ହଜୁରଙ୍କ ପକ୍ଷରୁ କାଷ୍ଠା ପାଳନ କରିବାକୁ କହିଲି । ସେ ମଧ୍ୟ ଆନନ୍ଦରେ ହଜୁରଙ୍କ କାଷ୍ଠା ବିଧିପୂର୍ବକ ପାଳନ କରୁଛନ୍ତି ।

ସେ ବ୍ରାହ୍ମଣ ଆମ୍ଭପକ୍ଷରୁ କାଷ୍ଠା ପାଳନ କରୁଛନ୍ତି ତୁମ୍ଭେ ସେ ବିଷୟରେ ନିଃସନ୍ଦେହ ହରିହର—ଅଜା ପଚାରିଲେ ।

ହରିହର କହିଲେ—ଆଜ୍ଞା, ଏଥିରେ ଆଉ ସନ୍ଦେହ ନାହିଁ ।

"ଅଜା ତୋର ନନ୍ଦ ଉତ୍ସବ ପାଳିଲେ ?" —ଅବିନାଶ ପଚାରିଲେ ।

ଅରବିନ୍ଦ କହିଲା—"ରାତିରେ ପୂଜା ଛଣାହେଲା । ସକାଳର ବଳିଥିବା ମାଛ ପଡ଼ି ଚଡଚଡ଼ ହେଲା । ଦେଶୀକଦଳି କ୍ଷୀରରେ ପଡ଼ି ଚକଟା ହେଲା । ଅଜାଙ୍କର ମୋର ମଣୋହି ହେଲା । ହରିହର ମଧ୍ୟ ଭୋଜନକଲେ । ତହିଁ ପରଦିନ ସକାଳେ ରାଧୀ ଗୋଟିଏ ବଡ଼ ଭାକୁଡ଼ ମାଛ ଧରି ଆସି ପହଞ୍ଚିଲା । ଅଜାଙ୍କର ସେହି କଥା ମୋତେ ଯେମିତି ହେଲେ ଆଜ ନନ୍ଦ ଉତ୍ସବ ପାଳିବାକୁ ହେବ । ମାଇ ରାଧୀକି ଛୁଡ଼ିବା ଲୋକ, କହିଲା—"ଉପାସ, ବ୍ରତ ତ ରାତି ଅଧରୁ ଆରମ୍ଭ ହୋଇ ସକାଳେ ସରିଲାଣି । ଆଜ ଉତ୍ସବ ଦିନରେ କିଏ କାଷ୍ଠା ପାଳୁଥାଏ ?"

ଭାକୁଡ଼ ମାଛଟା ସଙ୍ଗେ ସଙ୍ଗେ ଧରା ହୋଇ ଆସିଥିଲା ନା କଅଣ ? ପାଟି ପାକୁପାକୁ କରୁଥିଲା । ରାଧୀ ଟୋକେଇରୁ କାଢି ମାଛଟିକୁ ବାରଣ୍ଡା ଉପରେ ଶୁଆଇଦେଲା,—ଡାକିଲା "ପୂଜାରୀ, ପୂଜାରୀ ମାଛଟାକୁ ନେଇଯାଅ । ଆଜ ଏତେବଡ ଉତ୍ସବ ଦିନରେ କିଏ କ୍ଷୀର ପୁରି ଖାଉଛନ୍ତି, କିଏ ମାଂସ ପଲାଉ ଖାଉଛନ୍ତି, ଆଉ ବାବୁ ନିରାମିଷ ଖାଇ କାଷ୍ଠା କରିବେ ?"

ଅଜା ଡାକ ପକାଇଲେ ହରିହର, ହରିହର ?

ହରିହର 'ଆଜ୍ଞା'ଟାଏ କହି ଶୋଷେଇ ଘରୁ ଆସି ପହଞ୍ଚିଲା ।

ଅଜା କହିଲେ—'ରାଧୀ କଅଣ କହୁଛି ଶୁଭିଲା' ।

ଭାକୁଡ଼ ମାଛଟି ଅଢ଼େଇ କେଜିରୁ କମ ହେବ ନାହିଁ । ଦେଖିଲେ ରଖିବାକୁ ନିଶ୍ଚୟ ଇଚ୍ଛା ହେବ ।

ହରିହର କହିଲେ—'ରାଧୀ ଯାହା କହୁଛି ଠିକ୍ କଥା କହୁଛି ଆଜ୍ଞା ! କୃଷ୍ଣଜନ୍ମ କାଷ୍ଟା ଗତକାଲି ଅର୍ଦ୍ଧରାତ୍ରରୁ ଆରମ୍ଭ ହୋଇ ଆଜି ପ୍ରତ୍ୟୁଷରୁ ସମାପନ ହୋଇ ଯାଇଛି; ଯାହାକି ଆପଣ ନିଷ୍ଠାର ସହିତ ବିନା ଆହାରରେ ପାଳନ କରି ସାରିଛନ୍ତି । ଆଜି ଉତ୍ସବ ଦିନ । ଭଗବାନ ଶ୍ରୀକୃଷ୍ଣ ତାଙ୍କର ବର୍ଷାରେ ଏ ଭାକୁଡ଼ି ମତ୍ସ୍ୟ ଭକ୍ତର ଭୋଜନ ପାଇଁ ପ୍ରେରଣ କରିଛନ୍ତି । ନହେଲେ ଅଦ୍ୟ ପ୍ରତ୍ୟୁଷରୁ ରାଧୀ କିଏ, ଭାକୁଡ଼ି ମାଛ କିଏ, ହଜୁର କିଏ, ମୁଁ କିଏ । ଶ୍ରୀକୃଷ୍ଣ ମୁରାରି, ସର୍ବବ୍ୟାପୀ, ସର୍ବଜାଣ । ଯାହା ଜଣାଯାଉଛି ସେ ହଜୁରଙ୍କ କାଷ୍ଟାରେ ଓ ଆକୁଳ ନିବେଦନରେ ଏକବାର ସନ୍ତୁଷ୍ଟ ।"

ଅଜା କହିଲେ—ତେବେ ଆଉ ଜୀବଟିକୁ ବାରଣ୍ଡାରେ ପକାଇ କଷ୍ଟ ଦେଲ କାହିଁକି ? ନିଅ ତାର ପରିତ୍ରାଣ କର । ଆଉ ଦେଖ ! ଅତିଶୀଘ୍ର ଯେପରି ଭୋଜନର ବ୍ୟବସ୍ଥା ହୁଏ ।

ହରିହର ମାଛଟିକୁ ନେଇ ରୋଷେଇ ଘରକୁ ଚାଲିଗଲେ । ରାଧୀ ମଧ୍ୟ 'ପରେ ଆସିବି କହି ବିଦାୟ ନେଲା । ଅଜା ଶୀଘ୍ର ସ୍ନାନପର୍ବ ସାରି ରୋଷେଇ ବାରଣ୍ଡାରେ ମାଛକୁ ଚାହିଁ ବସିଲେ କଟା ହେବାଠାରୁ ରୋଷେଇ ଶେଷ ପର୍ଯ୍ୟନ୍ତ । ସେଦିନ ମଧ୍ୟ ଦିବ୍ୟଭୋଜନ ହେଲା । ହରିହର ଆମ୍ବ ମଣୋହି ପରେ ନିଜେ ଭୋଜନ କଲେ । ନନ୍ଦ ଉତ୍ସବରେ ତୃପ୍ତିର ଗୋଟିଏ ପରିବେଶ ଭାକୁଡ଼ି ମାଛ ସୃଷ୍ଟି କଲା । ସକାଳ ଜଳଖିଆରେ ଭାକୁଡ଼ିମାଛ ଭଜା, ଦିନ ଖାଇବାରେ ମାଛ ତରକାରି, ଭଜା, ଖଟା ବେଳେ ମାଛ ଭଜା, ସୁଜି, ଦେଶୀ ପାଚିଲା କଦଳୀ, ରାତି-ଭୋଜନରେ ମାଛମୁଣ୍ଡ ଚଡ଼ଚଡ଼ି, ପୁରି, ଭଜା ଖାଇବାକୁ ହେଲା ।

ତା'ର କିଛି ଦିନ ପରେ ଅଜାଙ୍କର ଅଣ୍ଟା ଧରିଲା । ସେ ଶେଯରୁ ଉଠି ପାରିଲେ ନାହିଁ । ଡାକ୍ତର ଯେତେ ଔଷଧ, ଇଞ୍ଜେକ୍‌ସନ ଦେଲେ ମଧ୍ୟ ଅଣ୍ଟା କମିଲା ନାହିଁ । ଆଈଙ୍କ ପାଖକୁ ଖବର ଗଲା, ଆଈ ଆସି ପହଞ୍ଚିଲେ । ଆଈ ଶୁଣିଲେ ଅଜା ଜନ୍ମାଷ୍ଟମୀ ଓ ନନ୍ଦ ଉତ୍ସବ ଦିନ ମାଛ ଖାଇଛନ୍ତି । ତାଙ୍କ ରାଗ କହିଲେ ନ ସରେ, କହିଲେ—'ତୁମେ ଶ୍ରୀକୃଷ୍ଣଙ୍କ ଜନ୍ମ ଦିନରେ ମାଛ ଖାଇ କାଷ୍ଟା କରିଛ କହି ତାଙ୍କୁ ଯେମିତି ଭଣ୍ଡିଲ, ସେ ସେମିତି ତୁମ ଅଣ୍ଟା ଉପରେ ବସି ଏ ଦଣ୍ଡ ଦେଉଛନ୍ତି ।"

କେତେ କବିରାଜ ଚିକିତ୍ସା, ଝଡ଼ା ଫୁଙ୍କା, କଡ଼ା ତେଲ ମାଲିସ, ଗରମ ପାଣି ସେକ ପରେ ଅଜାଙ୍କ ଅଣ୍ଟା ଟିକିଏ ଭଲ ହେଲା । ସେ ସଳଖ ହୋଇ ବସିଲେ, ବାଡ଼ି ଧରି ଟିକିଏ ବୁଲିଲେ । ଆଣ୍ଠଙ୍କର ପ୍ରଭାବ କେତେଦୂର ଅଜାଙ୍କ ଉପରେ ପଡ଼ିଲା କେଜାଣି ଅଜା ସେହିଦିନ ଠାରୁ ଏକାଦଶୀ, ସଂକ୍ରାନ୍ତି, ପୂର୍ଣ୍ଣିମୀ, ଜନ୍ମାଷ୍ଟମୀ, ଜାଗର ଯାତ୍ରା, ପଞ୍ଚକ, ବଡ଼ ଓଷା ପ୍ରଭୃତି ଠାକୁଙ୍କର ଯେତେ ଯାନିଯାତ୍ରା ସବୁ ନିଷ୍ଠା ଓ କାଷ୍ଠାରେ ବିହିତ ପାଳିଲେ ।

ଅରବିନ୍ଦର ତା ଅଜାଙ୍କ ଜନ୍ମାଷ୍ଟମୀ କାଷ୍ଠା ଗପ ଶେଷହେଲା । ଆସରର ପିଲାମାନେ ଏକାବେଳେକେ କହି ଉଠିଲେ—ଆଜି ଗପଟି ହେଲା ସବୁଠାରୁ ମଜା ଗପ ।





ସାମ୍ବାଦିକ ଶ୍ରୀ ନାରାୟଣ ମହାପାତ୍ର ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ ରୂପେ ପରିଚିତ । ତାଙ୍କର ଶତାଧିକ ଗପ ଏଥି ମଧ୍ୟରେ ପ୍ରକାଶିତ ହେଲଣି । 'ଶିଶୁଲେଖା', 'ମୋତି ମାଣିକ', 'ସୁନାପିଲା', 'ଜହ୍ନଆ ନନା', 'ଡପଗ୍ରଭକ', 'କଳିଙ୍ଗ କିଶୋର', 'କିଶୋର ଜ୍ୟୋତି', 'ଆମର ଭାବନା' ପ୍ରଭୃତି ବିଭିନ୍ନ ଶିଶୁ ସାହିତ୍ୟ ପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଇ ଯାଇଛି । 'ସୁନାପିଲା', ଜହ୍ନଆ ନନା' ଓ 'ଟିକି ଦୁହଆ' ପତ୍ରିକା ପକ୍ଷରୁ ହୋଇ-ଥିବା ରାଜ୍ୟ ସ୍ତରୀୟ ଶିଶୁ ସାହିତ୍ୟିକ ସମ୍ମିଳନୀରେ ଓ 'ମଣିମାଣିକ' ପକ୍ଷରୁ ହୋଇଥିବା ବାର୍ଷିକ ଉତ୍ସବରେ ସେ ଜଣେ ବିଶିଷ୍ଟ ଶିଶୁ ସାହିତ୍ୟିକ ହିସାବରେ ପୁରସ୍କୃତ ହୋଇଛନ୍ତି । କଟକ ଆକାଶବାଣୀ ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମରୁ ତାଙ୍କର ବହୁ ଗପ ଓ କବିତା ପ୍ରସାରିତ ହେଲାଣି । ତାଙ୍କ ନିଜର ଜନ୍ମସ୍ଥାନ ହେଉଛି ସାଉବଳଭଦ୍ରପୁର, ପୋଷ୍ଟ. ଚନ୍ଦନପୁର, ଜିଲ୍ଲା ପୁରୀ । ବାପାଙ୍କ ନାମ ରାମଚନ୍ଦ୍ର ମହାପାତ୍ର । ସେ ବର୍ତ୍ତମାନ 'ସମାଜ'ର ସହ-ସମ୍ପାଦକ ଅଛନ୍ତି ।

Cover Printed at Sri Radhanath Co-operative Press, Balubazar, Cuttack-2